ପ୍ରକାଶ କାଳ ୧୯୯୭
ଦ୍ୱିତୀୟ ମୁଦ୍ରଣ ୧୯୯୯

ପ୍ରକାଶକ
ବିଜ୍ଞାନଭାରତୀ
ଆଲାମଚାନ୍ଦ ବଜାର, କଟକ ୭୫୩୦୦୨

ଚିତ୍ର
ସୁନାମଣି ସାମଲ

ଲିପିସଂଯୋଜନ
ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦ ବଜାର, କଟକ ୭୫୩୦୦୨

ମୁଦ୍ରଣ
ରୟାଲ୍ ହାଫ୍‌ଟୋନ୍ କୋ, କଟକ

ମୂଲ୍ୟ ଟ ୨୦.୦୦

# ସୂଚୀ

# ଉପକ୍ରମ

ମଣିଷ ଶରୀର ଏକ ବିଚିତ୍ର । ଏହାର ବିଭିନ୍ନ ଅଂଶ ଏପରି ଭାବେ ଖଞ୍ଜାଯାଇଛି ଯେ, ତାହା ଏକ ସମୟରେ ବିଭିନ୍ନ ପ୍ରକାରର କାର୍ଯ୍ୟ ଠିକ୍ ଠିକ୍ କରିପାରେ । କୌଣସି ବୈଜ୍ଞାନିକ ଏପର୍ଯ୍ୟନ୍ତ ମଣିଷ ଶରୀର ପରି ଏଡ଼େ ସୁନ୍ଦର ଓ ବିଚିତ୍ର ଯନ୍ତ୍ର ତିଆରି କରିପାରି ନାହାନ୍ତି, ଯାହାକି ଏକ ସମୟରେ ଗୁଡ଼ିଏ କାର୍ଯ୍ୟ କରି ପାରିବ । ମଣିଷ ପରି କୌଣସି ଯନ୍ତ୍ର ନୂଆ ନୂଆ ଚିନ୍ତା ଭାବନା ସୃଷ୍ଟି କରିପାରେ ନାହିଁ; ହସି ବା କାନ୍ଦିପାରେ ନାହିଁ, କାର୍ଯ୍ୟର ପରିବର୍ତ୍ତନ କରିପାରେ ନାହିଁ ।

ମଣିଷ ଏହିସବୁ କାର୍ଯ୍ୟ କରିବା ପାଇଁ ତାହାର ଶରୀରରେ ଥିବା ମସ୍ତିଷ୍କ ଉପରେ ନିର୍ଭର କରିଥାଏ । ମସ୍ତିଷ୍କର ଆଦେଶରେ ଶରୀରର ଭିନ୍ନ ଭିନ୍ନ ଅଂଶ ଭିନ୍ନ ଭିନ୍ନ ପ୍ରକାରର କାର୍ଯ୍ୟ କରିଥାନ୍ତି । କେତେକଙ୍କର ମସ୍ତିଷ୍କ ଗଠନରେ କିଛି ବା ପୂରା ମାତ୍ରାରେ ତ୍ରୁଟି ରହି ଯାଇଥାଏ । ଫଳରେ ସେମାନେ ଠିକ୍ ଭାବରେ କାର୍ଯ୍ୟ କରିପାରନ୍ତି ନାହିଁ ।

ସାଧାରଣ ତଥା ସ୍ୱାଭାବିକ ପ୍ରକ୍ରିୟାରେ ଆମର ଆଖି ପାଖକୁ ଧୂଳି, ପୋକ କିମ୍ବା କିଛି ଆଘାତ ଆସିଲେ ଆଖି ଡୋଳା ଆପେ ଆପେ ବନ୍ଦ ହୋଇଯାଏ । ଏହା କିପରି ସମ୍ଭବ ହେଉଛି ? ଏସବୁ ସେହି ମସ୍ତିଷ୍କର କାର୍ଯ୍ୟ । କୌଣସି ପୋକ କିମ୍ବା ଧୂଳି ଆଖି ପାଖକୁ ଆସିବା ମାତ୍ରକେ ମସ୍ତିଷ୍କ ଆଖିପତାକୁ ବୁଜି ହୋଇଯିବା ପାଇଁ ଆଦେଶ ଦେଉଛି । ସେହିପରି କୌଣସି ପ୍ରଚଣ୍ଡ ଶବ୍ଦ ହେବାର ସୂଚନା ପାଇଲେ ଆମ ହାତ, କାନ ବନ୍ଦ କରିବା ପାଇଁ ଆପେ ଆପେ ଟେକି ହୋଇଯାଏ ।

ମଣିଷ ଶରୀର ମଧ୍ୟରେ ଥିବା ଅନେକ ଛୋଟ ଛୋଟ ଯନ୍ତ୍ରର ଏକତ୍ରୀକରଣକୁ 'ମଣିଷ ଯନ୍ତ୍ର' କୁହାଯାଏ । ଏହି ଯନ୍ତ୍ରଗୁଡ଼ିକ ମସ୍ତିଷ୍କର ନିର୍ଦ୍ଦେଶ ଓ ପରସ୍ପର ସହଯୋଗ ଦ୍ୱାରା କାର୍ଯ୍ୟ କରି ଥାଆନ୍ତି ।

ମଣିଷ ଶରୀର ମଧ୍ୟରେ ଥିବା ବିଭିନ୍ନ ଯନ୍ତ୍ରଗୁଡ଼ିକ କିପରି ଓ କାହିଁକି କାର୍ଯ୍ୟ କରନ୍ତି ତାହା ପରେ ଆଲୋଚିତ ହୋଇଛି ।

# ଖାଦ୍ୟଯନ୍ତ୍ର (ପାକଯନ୍ତ୍ର)

ଆମେ ଜୀବନ ଧାରଣ କରିବା ପାଇଁ ଭାତ, ଡାଲି, ତରକାରି, ମାଛ, ମାଂସ, ଘିଅ, ଦୁଧ, ଅଣ୍ଡା, କଞ୍ଚା ଫଳ ଇତ୍ୟାଦି ଖାଇଥାଉ । ଏହି ଖାଦ୍ୟର ସାରାଂଶ ଆମ ଶରୀର ଗଠନ ଲାଗି ରହିଥାଏ ଏବଂ ଅଦରକାରୀ ଜିନିଷ ମଳମୂତ୍ର ଆକାରରେ ବାହାରି ଯାଇଥାଏ । ଶରୀର ମଧ୍ୟରେ ଥିବା ଯେଉଁ ଯନ୍ତ୍ର ଏହି କାମ କରିଥାଏ ତାହାକୁ ହଜମ ଯନ୍ତ୍ର ବା ପାକଯନ୍ତ୍ର କହନ୍ତି ।




ଚିତ୍ର ନଂ-୧ ପାକଯନ୍ତ୍ର

ପାକଯନ୍ତ୍ରର ପ୍ରଧାନ କାର୍ଯ୍ୟ ବିଷୟରେ କିଛି ଆଲୋଚନା କରିବା ପୂର୍ବରୁ ଏହାର ବିଭିନ୍ନ ଅଂଶଗୁଡ଼ିକ ସମ୍ବନ୍ଧରେ ସମ୍ୟକ୍ ଧାରଣା ଚିତ୍ର ନଂ–୧ ରୁ ଜାଣିହେବ ।

ଆମେ ସାଧାରଣତଃ ଜାଣୁ ଯେ; ଖାଦ୍ୟ ଖାଇବା ପରେ ତାହା ପେଟ ଭିତରକୁ ଚାଲି ଯାଇଥାଏ । କିନ୍ତୁ ଖାଦ୍ୟ ଖାଇବା ଅର୍ଥ ହେଉଛି ଯେ, ତାହା ଖାଦ୍ୟ ଯନ୍ତ୍ରର ପ୍ରଥମ ଅଂଶ ପାଟିରେ ପଶେ । ଦାନ୍ତ ସାହାଯ୍ୟରେ ଚୋବାଇବା ଦ୍ୱାରା ବଡ଼ ବଡ଼ ଖାଦ୍ୟ ଖଣ୍ଡ ଛୋଟ ଛୋଟ ଖଣ୍ଡରେ ପରିଣତ ହୁଏ । ଲାଳ ଗ୍ରନ୍ଥିରୁ ଲାଳ ନିର୍ଗତ ହୁଏ । ଖାଦ୍ୟ ଖଣ୍ଡଗୁଡ଼ିକ ଏହି ଲାଳ ସହ ମିଶି ଖାଦ୍ୟନଳୀ ବାଟେ ସହଜରେ ପାକସ୍ଥଳୀ ଭିତରକୁ ପ୍ରବେଶ କରେ । ଏହି କାର୍ଯ୍ୟରେ ପାଟି ଭିତରେ ଥିବା ଜିଭ ମଧ୍ୟ ସାହାଯ୍ୟ କରିଥାଏ ।

ପାକସ୍ଥଳୀ ଭିତରେ ଏହା ବିଭିନ୍ନ ପାକରସ ସହ ମିଶି ସରଳ ଉପାଦାନରେ ପରିଣତ ହୁଏ ।




ଚିତ୍ର ନଂ-୨ ପାକକ୍ରିୟା ଯନ୍ତ୍ର

ତପ୍‌ରେ ଏହା କ୍ଷୁଦ୍ରାନ୍ତ ଭିତରେ ପ୍ରବେଶ କରେ । ଏଠାରେ ଏହା ଅନ୍ୟାନ୍ୟ ଯନ୍ତ୍ରରୁ ନିର୍ଗତ ବିଭିନ୍ନ ପ୍ରକାରର ପାକରସ ସହ ମିଶେ ଓ ଜଟିଳ ଖାଦ୍ୟ ଅଂଶ ସରଳ ଅଂଶରେ ପରିଣତ ହୋଇଯାଏ । ଫଳରେ ସରଳ ଅଣୁମାନ କ୍ଷୁଦ୍ରାନ୍ତ ପରଦା ଭେଦ କରି ରକ୍ତରେ ପହଞ୍ଚେ । ରକ୍ତକୁ ଶୋଷିତ ହେଉ ନ ଥିବା ଭାଗଟି ବୃହଦନ୍ତ୍ରରେ ପ୍ରବେଶ କରି ମଳଆକାରରେ ମଳଦ୍ୱାର ଦେଇ ବାହାରି ଯାଏ ।




ଚିତ୍ର ନଂ-୩ ବାନ୍ତି ବା ବମନପ୍ରକ୍ରିୟା

ରକ୍ତ ତିଆରି ଯନ୍ତ୍ରରେ ଛୋଟ ଖାଦ୍ୟକଣିକା, ରକ୍ତ ସାହାଯ୍ୟରେ ଶରୀରର ବିଭିନ୍ନ ଅଂଶକୁ ପ୍ରବାହିତ ହୁଏ । ରକ୍ତ ଶରୀରର ବିଭିନ୍ନ ଅଂଶରେ କାର୍ଯ୍ୟ କରି ବିଶୋଧନ ପାଇଁ ମୂତ୍ରଗ୍ରନ୍ଥି (Kidney)କୁ ପ୍ରବେଶ କରେ ଓ ବିଶୋଧନ ପରେ ରକ୍ତ ଯନ୍ତ୍ରକୁ ଯାଏ । ମୂତ୍ରଗ୍ରନ୍ଥିରୁ ଅଦରକାରୀ ଜଳୀୟ ପଦାର୍ଥ ଜଳ ମୂତ୍ରନଳୀ ଦେଇ ପରିସ୍ରା ଆକାରରେ ବାହାରିଯାଏ ।

**ବାନ୍ତି କିପରି ହୁଏ ?**

ଖାଦ୍ୟର ଅନାବଶ୍ୟକ ଅଂଶଗୁଡ଼ିକ ପେଟ ଭିତରେ ରହିପାରେ ନାହିଁ । ତାହା ଛାତି ଓ ପେଟ ପାଖରେ ଥିବା ମାଂସପେଶୀର ସ୍ୱୟଂଚଳନ ଦ୍ୱାରା ବାନ୍ତି ହୋଇ ବାହାରିଯାଏ । ଖାଦ୍ୟ ସାଙ୍ଗରେ ପେଟରୁ ନିର୍ଗତ ବିଭିନ୍ନ ପାକରସର ମିଶ୍ରଣ ଫଳରେ ବାନ୍ତି ହେବା ଖାଦ୍ୟ ଆମ୍ବିଳା ଲାଗେ । ଚିତ୍ର ନଂ—୩ ରୁ ଏହି ପ୍ରକ୍ରିୟା ଜାଣିହେବ । ଚିତ୍ର ନଂ—୨ ରୁ ଖାଦ୍ୟର ଗତି, ପାକ ପ୍ରକ୍ରିୟା, ରକ୍ତ ସୃଷ୍ଟି ଓ ଅଦରକାରୀ ଜିନିଷର ନିଷ୍କାସନ ଜାଣିହେବ ।

# ଦାନ୍ତ ଓ ଜିଭ

**ଦାନ୍ତ**

ମଣିଷର ସର୍ବମୋଟ ୩୨ଟି ଦାନ୍ତ ଥାଏ । ପିଲାଙ୍କର ପ୍ରଥମ ଦାନ୍ତ ପଡ଼ିଲା ପରେ ଏହି ୩୨ଟି ଦାନ୍ତ ବଡ଼ ଆକାରରେ ଆପେ ଆପେ ଉଠେ । ଏହି ଦାନ୍ତସବୁକୁ ଜାବୁଡ଼ି ରଖିବା ପାଇଁ ମାଂସଳ ମାଢ଼ି ମଧ ଥାଏ (ଚିତ୍ର ନଂ–୪)




ଚିତ୍ର ନଂ-୪ ଦାନ୍ତ ଓ ଜିଭ

ଆଗ ଉପର ଓ ତଳ ୪ଟି ଦାନ୍ତ ଓସାର ଓ ଧାରୁଆ । ଏହା ବଡ଼ ଆକାର ଖାଦ୍ୟକୁ କାଟି ଛୋଟ କରେ । ଯଥା : ନଡ଼ିଆ, କଦଳୀ, ସେଓ ଇତ୍ୟାଦି ଖାଦ୍ୟକୁ କାଟି ଖଣ୍ଡ ଖଣ୍ଡ କରେ ।

ତା'ପାଖକୁ ଲାଗି ଦୁଇ ପାଖରେ ତଳ ଉପର ହୋଇ ୪ଟି ଦାନ୍ତ ଥାଏ, ଯାହାକି ଶକ୍ତ ଓ ମୁନିଆ—ଏହାକୁ ଶ୍ୱାନଦାନ୍ତ କୁହାଯାଏ । ଏହା ମାଂସ ଇତ୍ୟାଦିକୁ ଛିଣ୍ଡାଇ ଖାଇବାରେ ସାହାଯ୍ୟ କରେ । ଏହି ଦାନ୍ତକୁ

ମଣିଷମାନଙ୍କ ଅପେକ୍ଷା, ମାଂସାଶୀ ପ୍ରାଣୀମାନେ ବେଶି ବ୍ୟବହାର କରନ୍ତି । ତା'ପରେ ଉପର ତଳ ହୋଇ ଦୁଇ ପାର୍ଶ୍ୱରେ ୫ଟି କରି ଦାନ୍ତ । ଏହିପରି ସର୍ବମୋଟ ୨୦ଟି ଦାନ୍ତ ଥାଏ, ଯାହାକି ବଡ଼ ବଡ଼ ଓ ସମତଳ, ଏହା ଖାଦ୍ୟକୁ ପେଷି ଛୋଟ ଛୋଟ କରିଦିଏ । ଏହି ପେଷଣରେ ସାହାଯ୍ୟ କରିବା ପାଇଁ ଦାନ୍ତ ପାଖକୁ ଏକ ପ୍ରକାର ଲାଳ ନିର୍ଗତ ହୁଏ । ଏହି ଲାଳମିଶା ପେଷା ଖାଦ୍ୟ ଜିଭର ଚାଳନରେ ଖାଦ୍ୟନଳୀରେ ସହଜରେ ଖସି ଖସି ପେଟ ଭିତରକୁ ଯାଏ । (ଚିତ୍ର ନଂ—୫)




ଚିତ୍ର ନଂ-୫

**ଜିଭ ଓ ସ୍ୱାଦ**

ଜିଭର ସ୍ନାୟୁ ମସ୍ତିଷ୍କକୁ ବାର୍ତ୍ତା ପ୍ରେରଣ କରେ । ଏହି ଛୋଟ ଛୋଟ ସ୍ନାୟୁ ଅଗ୍ରଭାଗକୁ ସ୍ୱାଦ ବାରିବା କଢ଼ି ବୋଲି କୁହାଯାଏ । ସେମାନେ ଖଟା, ମିଠା, ଲୁଣିଆ ଓ ପିତା ସ୍ୱାଦ ବାରି ପାରନ୍ତି । (ଚିତ୍ର ନଂ—୬)




ଚିତ୍ର ନଂ-୬ ଜିଭ ଓ ସ୍ୱାଦ ବାରିବା କଳିକା

ଜିଭ ଉପରେ ଏହି ଛୋଟ ସ୍ୱାଦ ବାରିବା କଢ଼ି ସବୁ ଡାଳି ପଡ଼ିବା ପରି ଜିଭର ବିଭିନ୍ନ ଜାଗାରେ ଥାଆନ୍ତି, ଜିଭର ଅଗ୍ରଭାଗରେ ମିଠା କଢ଼ିତାଳି ଥାଆନ୍ତି । ପିତା ଜାଣିବା କଢ଼ିତାଳି ଜିଭରେ ପଛ ଆଡ଼କୁ ଥାଏ । ତେଣୁ ନ ଗିଳିଲା ପର୍ଯ୍ୟନ୍ତ ପିତାର ସ୍ୱାଦ ବାରି ହୁଏ ନାହିଁ ।

ନାକ, ମସ୍ତିଷ୍କକୁ ଖାଦ୍ୟର ବିଭିନ୍ନ ବାସନା ବିଷୟରେ ଜଣାଏ । ନାକ ବନ୍ଦ କରି ଖାଇଲେ କେବଳ ସ୍ୱାଦ ଯଥା—ଖଟା, ମିଠା, ଲୁଣିଆ ଓ ପିତା ଜାଣି ହୁଏ ସିନା ଖାଦ୍ୟର ବାସ୍ନା ବାରି ହୁଏ ନାହିଁ ।

**ଦାନ୍ତ କାହିଁକି ଖରାପ ହୁଏ ?**

ଖାଦ୍ୟ ଚୋବାଇ ଖାଇଲା ବେଳେ କେତେକ ତରଳ ଖାଦ୍ୟପଦାର୍ଥ ଦାନ୍ତରେ ଲାଗି ରହେ । ଏହା ବେଶୀ ସମୟ ଲାଗି ରହିଲେ ଦାନ୍ତରେ

କ୍ଷୁଦ୍ର ଗାତ ସୃଷ୍ଟି କରେ । ଲୁହାକୁ ପାଣିରେ ବୁଡ଼ାଇ ବାହାରେ କିଛିଦିନ ରଖିଲେ କଳଙ୍କି ଲାଗିଲା ପରି, ଦାନ୍ତ କେତେକ ଧରଣର ଖାଦ୍ୟ ଯୋଗୁ ଖରାପ ହୁଏ । ବାୟୁରୁ ବିଭିନ୍ନ ଜୀବାଣୁ ଏହି ଛୋଟ ଗାତକୁ ବଡ଼ କରିବାରେ ସାହାଯ୍ୟ କରନ୍ତି । ଏହା ବ୍ୟତୀତ ନିୟମିତ ଦାନ୍ତ ନ ଘଷିଲେ ବା ଖାଇସାରିବା ପରେ ଦାନ୍ତ ସଫା ନ କଲେ ଜୀବାଣୁମାନେ ଦାନ୍ତକୁ ବିଶେଷ କ୍ଷତିଗ୍ରସ୍ତ କରନ୍ତି । (ଚିତ୍ର ନଂ—୭) । ଫଳରେ ଅଳ୍ପ ଦିନରେ ଦାନ୍ତ ଖରାପ ହୋଇଥାଏ ।




ଚିତ୍ର ନଂ-୭ ଦନ୍ତ କ୍ଷୟ

ଚିତ୍ର ନଂ—୮ ରେ ଦାନ୍ତ ଓ ଜିଭ ଯନ୍ତ୍ର କିପରି କାର୍ଯ୍ୟ କରେ ଦର୍ଶା ଯାଇଅଛି । ଏହି ଦାନ୍ତ ଓ ଜିଭ ଯନ୍ତ୍ର ପ୍ରଥମେ ଖାଦ୍ୟକୁ ଗିଳିବା ପାଇଁ ପ୍ରସ୍ତୁତ କରେ । ଆଗଦାନ୍ତ ଧାରୁଆ ହୋଇଥିବାରୁ ବଡ଼ ଆକାର ଖାଦ୍ୟକୁ କାଟି ଛୋଟ ଛୋଟ କରି ଜିଭ ସାହାଯ୍ୟରେ ପେଷଣ ଦାନ୍ତ ପାଖକୁ ପଠାଏ ଓ ପେଷଣ ପରେ ଗଳା ବା କଣ୍ଠଦ୍ୱାରକୁ ପଠାଏ ।

ଗଳା ପାଖରେ ବାୟୁ ଯିବା ଦ୍ୱାର ଓ ଖାଦ୍ୟ ଯିବା ଦ୍ୱାର ଅଲଗା ଭାବରେ ଥାଏ ଓ ତାକୁ ଦରକାର ଅନୁଯାୟୀ ବନ୍ଦ କରିବା ପାଇଁ ବ୍ୟବସ୍ଥା ଥାଏ । ଖାଦ୍ୟ ଗିଳିବା ସମୟରେ ସେହି ଦ୍ୱାରଟି ବା... ଯିବା



ଚିତ୍ର ନଂ-୮

ନଳୀକୁ ବନ୍ଦ କରିଦିଏ । ବାୟୁ ଯିବା ନଳୀ ବନ୍ଦ ନ ହେବା ପର୍ଯ୍ୟନ୍ତ ଖାଦ୍ୟ ଗିଳି ହୁଏ ନାହିଁ ।

ଖାଦ୍ୟ ଖାଇସାରିଲା ପରେ ଦାନ୍ତକୁ ପରିଷ୍କାର କରିବାକୁ ହୁଏ, ନ ହେଲେ ଏ ଯନ୍ତ୍ର ଅନ୍ୟ ଯନ୍ତ୍ର ଭଳି ଠିକ୍ କାର୍ଯ୍ୟ କରିବ ନାହିଁ ଓ ଅଳ୍ପ ଦିନେ ଖରାପ ହୋଇଯିବ ।

# ରକ୍ତ ଓ ରକ୍ତ ସଞ୍ଚାର

**ରକ୍ତ କ'ଣ ?**

ରକ୍ତର ଅଧିକାଂଶ ଅଂଶ ଈଷତ୍ ହଳଦିଆ ତରଳ ପଦାର୍ଥ ଯାହାକୁ ପ୍ଲାଜମା କୁହାଯାଏ । ଏହା ମଧ୍ୟରେ ଥିବା ଲାଲ ରଙ୍ଗର କୋଷ (Cell)କୁ ଲାଲ ରକ୍ତକୋଷ କୁହାଯାଏ । ଯାହା ପାଇଁ ରକ୍ତ ଲାଲ ରଙ୍ଗ ଦେଖାଯାଏ । ସେହିପରି ରକ୍ତରେ ଧଳା ରଙ୍ଗର କୋଷ ଥାଏ । ଏମାନେ ଏତେ ଛୋଟ ଯେ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଦେଖିବା ଛଡ଼ା ଖାଲି ଆଖିରେ ଦେଖାଯାଏ ନାହିଁ । (ଚିତ୍ର ନଂ—୯)




ଚିତ୍ର ନଂ-୯

ରକ୍ତରେ ଥିବା ଛୋଟ ରକ୍ତକୋଷ ବଞ୍ଚିବା ପାଇଁ ଖାଦ୍ୟ ଓ ଅମ୍ଳଜାନ ଦରକାର କରନ୍ତି । ମଣିଷ ଶରୀରରେ ରକ୍ତ ସ୍ରୋତ ନଦୀର ଗତି ପରି ପ୍ରବାହିତ ହୁଏ ଏବଂ ପ୍ରତ୍ୟେକ କୋଷକୁ ଖାଦ୍ୟ ଉପାଦାନ ଓ ଅମ୍ଳଜାନ ଯୋଗାଏ ।

ଲାଲ ରକ୍ତକୋଷ ଫୁସ୍‌ଫୁସ୍‌ରୁ (Lungs) ଅମ୍ଳଜାନ ସଂଗ୍ରହ କରେ ଓ ଅଦରକାରୀ ବାଷ୍ପ (ଅଙ୍ଗାରକାମ୍ଳଜାନ) ବାହାର କରିଦିଏ । ଧଳା

ମାରିଦିଏ । ଏହାର ଆକାର ବଡ଼, କିନ୍ତୁ ରକ୍ତରେ ଏମାନଙ୍କର ସଂଖ୍ୟା କମ୍ ।

## ରକ୍ତ କିପରି ଶରୀର ଭିତରେ ପ୍ରବାହିତ ହୁଏ ?

ହୃତ୍‌ପିଣ୍ଡ ସ୍ୱୟଂଚାଳିତ । କିନ୍ତୁ ଅନେକ ସମୟରେ ମସ୍ତିଷ୍କରୁ ଆଦେଶ ପାଇ ହୃତ୍‌ପିଣ୍ଡ ଚାପିହୁଏ । ଫଳରେ ରକ୍ତ ବାହାରକୁ ଯାଏ । ହୃତ୍‌ପିଣ୍ଡ ଭିତରେ ଛୋଟ ଛୋଟ ଦ୍ୱାର ଖୋଲେ ଓ ବନ୍ଦ ହୁଏ । ଚିତ୍ର ନଂ-୧୦ରେ ହୃତ୍‌ପିଣ୍ଡ ଦେଖା ଯାଇଅଛି । ହୃତ୍‌ପିଣ୍ଡ ଗୋଟିଏ ମାଂସଳ ଥଳୀ ।



ଚିତ୍ର ନଂ-୧୦ ହୃତ୍‌ପିଣ୍ଡ

ଏଥିରେ ଚାରିଟି କୋଠରି ଥାଏ । ଏହି କୋଠରି ସବୁ ବଡ଼ ବଡ଼ ରକ୍ତ ଭଣ୍ଡାର । ଶରୀର ଭିତରେ ରକ୍ତ ପ୍ରବାହ ଗୁଡ଼ିଏ ଛୋଟ ଛୋଟ ଶାଖା, ପ୍ରଶାଖା ନଳୀ ଦେଇ ଗତି କରେ । ଏହି ସବୁ ଶାଖା ପ୍ରଶାଖା ପରସ୍ପର ସହ ଯୋଗ ହୋଇଥାଏ । ପ୍ରଶାଖା ମଧ୍ୟରେ ଅତି କ୍ଷୁଦ୍ର ରକ୍ତନଳୀ ଥାଏ । ଆଖି ତଳ ପତାକୁ ତଳକୁ ଟାଣି ଗୋଟେ ଆରଶିରେ ଦେଖିଲେ ଲାଲ ଲାଲ ସରୁ ଜିଆ ପରି ରକ୍ତ ନଳୀ ଦେଖିପାରିବ । ଏହି ସବୁ ରକ୍ତନଳୀ ଏପରି ଭାବରେ ଶରୀର ମଧ୍ୟରେ ଯୋଗ ହୋଇଛି ଯେ,

ରକ୍ତ ଅନବରତ ତା'ମଧ୍ୟରେ ପ୍ରବାହିତ ହେଉଥାଏ । ଯଦି ଏହିସବୁ ରକ୍ତନଳୀ ଲମ୍ବାରେ ଯୋଗ କରାହୁଏ; ତେବେ ତାହା ବିସ୍ତାର ହୋଇ ପୃଥିବୀ ଚାରିପଟେ ଦୁଇଥର ଗୁଡ଼ାଇ ହୋଇଯିବ ।

ହୃତ୍‌ପିଣ୍ଡ ଗୋଟିଏ ପମ୍ପ ପରି, ଯିଏକି ରକ୍ତ ସଞ୍ଚାଳନରେ ସାହାଯ୍ୟ କରେ । ଏହା ପ୍ରଥମେ ଫୁସ୍‌ଫୁସ୍ (Lungs)କୁ ରକ୍ତ ପଠାଏ, ଯେଉଁଠାରେ କି ରକ୍ତରୁ ଅଦରକାରୀ ବାଷ୍ପ ଅଙ୍ଗାରକାମ୍ଳଜାନ ଅଲଗା ହୁଏ ଓ ଅମ୍ଳଜାନ ରକ୍ତ ସାଙ୍ଗରେ ମିଶି ହୃତ୍‌କିଣ୍ଡକୁ ଫେରିଆସେ । ପରେ ଏହା ଶରୀର ମଧ୍ୟରେ ପ୍ରବାହିତ ହୋଇ ସମସ୍ତ କୋଷ (Cell)କୁ ଅମ୍ଳଜାନ ଯୋଗାଏ (ପର ଚିତ୍ର ନଂ–୧୧ ଦେଖ) । ହୃତ୍‌ପିଣ୍ଡରୁ ଅମ୍ଳଜାନଯୁକ୍ତ ରକ୍ତ ନେଇ ଯାଉଥିବା ନଳୀକୁ ଧମନୀ ଏବଂ ହୃତ୍‌ପିଣ୍ଡକୁ ଅଙ୍ଗାରକାମ୍ଳ ବହନ କରି ଆଣୁଥିବା ରକ୍ତନଳୀକୁ ଶିରା କୁହାଯାଏ ।

ଶରୀରକୁ ଅନେକ ଶକ୍ତି ତିଆରି କରିବାକୁ ହୁଏ, ଯାହା ଫଳରେ ମଣିଷ କାର୍ଯ୍ୟକ୍ଷମ ହୁଏ । ଖେଳିବା, ଦୌଡ଼ିବା ବା ଅନ୍ୟାନ୍ୟ ଶାରୀରିକ ପରିଶ୍ରମ କଲେ ହୃତ୍‌ପିଣ୍ଡର ଗତି ଅଧିକ ହୁଏ । ନିଶ୍ୱାସ ଓ ପ୍ରଶ୍ୱାସ ପ୍ରଖର ହୁଏ । ଅମ୍ଳଜାନ ଶରୀର ଭିତରକୁ ଅଧିକ ପ୍ରବେଶ କରେ ଓ ଅଧିକ ଅଦରକାରୀ ବାଷ୍ପ (ଅଙ୍ଗାରକାମ୍ଳଜାନ) ଅଧିକ ବାହାରକୁ ନିର୍ଗତ ହୁଏ ।

ରକ୍ତ ସଞ୍ଚାଳନ ପଥରେ ଅନେକ ଦ୍ୱାର ଅଛି । ଯାହାକି ଗୋଟିଏ ଆଡ଼କୁ ଖୋଲେ । ତେଣୁ ରକ୍ତ କେବଳ ଏକ ଦିଗକୁ ଗତି କରେ, ଏହାର ପଛ ଗତି ନାହିଁ ।

ଶରୀର ଭିତରେ ରକ୍ତ ସଞ୍ଚାଳନ ପ୍ରକ୍ରିୟା ଚିତ୍ର ନଂ–୧୧ ରେ ଦିଆ ଯାଇଅଛି । ଚିତ୍ରରେ ଦେଖା ଯାଇଥିବା ଘର ଅଂଶଟି ହୃତ୍‌ପିଣ୍ଡ, କିନ୍ତୁ

ଚିତ୍ର ନଂ-୧୧ ଶରୀରରେ ରକ୍ତ ସଂଚାଳନ

ହୃତ୍‌ପିଣ୍ଡର ପୂର୍ଣ୍ଣାଙ୍ଗ ଆକାର ଚିତ୍ର ନଂ—୧୦ରେ ରହିଚି । ହୃତ୍‌ପିଣ୍ଡକୁ ମଝିରୁ ଦୁଇଭାଗ କଲେ କିପରି ଦେଖାଯିବ ତାହା ଚିତ୍ର ନଂ—୧୨ ରେ ଦର୍ଶାଇ ଦିଆ ଯାଇଅଛି । ଏହି ଚିତ୍ରରେ କଳା ଅଂଶ ରକ୍ତଭଣ୍ଡାର ।

ହୃତ୍‌ପିଣ୍ଡକୁ ମଝିରୁ ଦୁଇ ଭାଗ କଲେ ଏପରି ଦିଶେ :—




ଚିତ୍ର ନଂ-୧୨

# ଶ୍ୱାସଯନ୍ତ୍ର

**ନିଶ୍ୱାସ ଓ ପ୍ରଶ୍ୱାସ ପ୍ରକ୍ରିୟା କିପରି ହୁଏ ?**

ଫୁସ୍‌ଫୁସ୍‌ରେ ସ୍ପଞ୍ଜ ପରି ଖୁବ୍ ଛୋଟ ଛୋଟ ଛିଦ୍ର ଥାଏ । ଫୁସ୍‌ଫୁସ୍ ମଣିଷର ପଞ୍ଜରା ହାଡ଼ ମଧ୍ୟରେ ଖାଲିଥିବା ସ୍ଥାନରେ ମାଂସପେଶୀ ଦ୍ୱାରା ଝୁଲିକରି ଥାଏ । ଆମେ ଯେତେବେଳେ ପ୍ରଶ୍ୱାସ ଭିତରକୁ ନେଉ, (ଚିତ୍ର ନଂ–୧୩)




ଚିତ୍ର ନଂ-୧୩ ଶ୍ୱାସଯନ୍ତ୍ର

ଆମର ଛାତି ପ୍ରସାରିତ ହୁଏ । ଯଦ୍ୱାରା କି ବାୟୁ ଫୁସ୍‌ଫୁସ୍‌ରେ ପ୍ରବେଶ କରେ, ଯେପରି ପାଣି ସ୍ପଞ୍ଜରେ ପଶିଯାଏ । ଫୁସ୍‌ଫୁସ୍ ତଳେ ଥିବା ମାଂସପେଶୀ ଚିପି ହୋଇଯିବା ଦ୍ୱାରା ଫୁସ୍‌ଫୁସ୍‌ର ଆୟତନ ବଢ଼ିଯାଏ, ଯାହା ଫଳରେ ଆମର ଶ୍ୱାସନଳୀ ଦେଇ ପବନ (ବାୟୁ) ଫୁସ୍‌ଫୁସ୍ ଭିତରକୁ ପ୍ରବେଶ କରେ ।

ଆମେ ଯେତେବେଳେ ନିଃଶ୍ୱାସ ଦ୍ୱାରା ବାୟୁ ବାହାରକୁ ଛାଡୁ ଆମର ପଞ୍ଜରା ହାଡ଼ ପୁଣି ପୂର୍ବ ସ୍ଥାନକୁ ଚାଲିଯାଏ । ଫୁସ୍‌ଫୁସ୍ ତଳେ ଥିବା ମାଂସପେଶୀ ଉପରକୁ ଉଠିଯାଏ ଓ ବାୟୁ ଫୁସ୍‌ଫୁସ୍‌ରୁ ବାହାରି ଯାଏ (ଚିତ୍ର ନଂ—୧୪) । ଚିତ୍ର ନଂ—୧୫ ଶ୍ୱାସଯନ୍ତ୍ର, ଫୁସ୍‌ଫୁସ୍ ତଳେ ଥିବା




ଚିତ୍ର ନଂ-୧୪




ଚିତ୍ର ନଂ-୧୫

ମାଂସପେଶୀ ଗୋଟିଏ ଓଲଟା ହୋଇ ଥୁଆ ଯାଇଥିବା ଗିନା ଭଳି, ଆମେ ଯେତେବେଳେ ବାୟୁ ପ୍ରଶ୍ୱାସରେ ଭିତରକୁ ନେଉ, ଏହି ଗିନା ଚେପ୍‌ଟା ହୋଇଯାଏ, ପଞ୍ଜରା ଫୁଲି ଉଠେ, ଯାହା ଫଳରେ ଗିନାର ଉପର ଅଂଶ ମଝି ପଞ୍ଜରା ହାଡ଼ରେ ଲାଗିଯାଏ ।

## ଫୁସ୍‌ଫୁସ୍

ଆମର ଫୁସ୍‌ଫୁସ୍ ସ୍ପଞ୍ଜ ଭଳି । ଏହା ଖୁବ୍ ଛୋଟ ଛୋଟ ବାୟୁଭରା ମୁଣି । ବାୟୁଭରାକୋଠରି ଚାରି ପାଖରେ ଜାଲ ପରି ରକ୍ତ ନଳୀ ଘେରି ହୋଇଥାଏ । ସେଗୁଡ଼ିକ ବାୟୁରୁ ଅମ୍ଳଜାନ ନିଅନ୍ତି ।

ଫୁସ୍‌ଫୁସ୍‌ର ବାୟୁପୂର୍ଣ୍ଣ ମୁଣିରୁ ଜାଲକ ରକ୍ତ ନଳୀ ଅମ୍ଳଜାନ ନେଇ ଅଙ୍ଗାରକାମ୍ଳ ତ୍ୟାଗ କରେ



ଚିତ୍ର ନଂ-୧୬

ପ୍ରତିଦିନ ଯେତେ ବାୟୁ ଆମ ଫୁସ୍‌ଫୁସ୍‌ରେ ପଶେ ଓ ବାହାରେ, ବାହାରୁଥିବା ବାୟୁକୁ ଯଦି ଧରି ରଖି ପାରିବା, ତେବେ ତାହା ଏକ ବଡ଼ ଘର ଭର୍ତ୍ତି କରିଦେବ । (ଚିତ୍ର ନଂ–୧୬)

# କଥା କହିବା ଯନ୍ତ୍ର

କଥା କହିଲା ବେଳେ ଏହି ଯନ୍ତ୍ର ପ୍ରଧାନ କାର୍ଯ୍ୟ କରେ ।

ସ୍ୱରନଳୀକୁ ଢାକିଦେଲେ ସେଥିରେ କମ୍ପନ ସୃଷ୍ଟି ହୁଏ । ଏହି ସମୟରେ ବାୟୁ ବାହାରିଯାଏ । ଏହାଦ୍ୱାରା ବାୟୁମଣ୍ଡଳରେ ଶବ୍ଦ ଢେଉ ସୃଷ୍ଟି ହୁଏ । ତା'ପରେ ଆମର ଦାନ୍ତ, ଜିଭ, ଓଠ ଓ ପାଟିର ବିଭିନ୍ନ ଚାଳନା ଦ୍ୱାରା ଭାଷା ଶବ୍ଦ ସୃଷ୍ଟି ହୁଏ ।

ଅନେକ ସମୟରେ ଜଣଙ୍କ ଓଠ ଚାଳନାରୁ ସେ କ'ଣ କହୁଛି ବୁଝିହୁଏ । ଆଗରେ ଏକ ଦର୍ପଣ ରଖି କଥା କହିଲେ ଜଣାଯିବ କିପରି ପାଟିର ପରିବର୍ତ୍ତନ ହେଉଛି ।


ଆ - - - -

ଚିତ୍ର ନଂ: ୧୭


ଉ - - - -

ଚିତ୍ର ନଂ: ୧୮


ଇ - - - -

ଚିତ୍ର ନଂ: ୧୯

ପାଟିର ଆକାର ଶବ୍ଦକୁ ଭାଷାରେ ପରିଣତ କରେ ।

ଓଠ, ଜିଭ ଓ ଦାନ୍ତର ଗତି ଭାଷାର ବିଭିନ୍ନ ଶବ୍ଦ ତିଆରି କରେ ।

ସ୍ୱରନଳୀର କମ୍ପନ ଦ୍ୱାରା ବାୟୁରେ ଶବ୍ଦର ଢେଉ ସୃଷ୍ଟି ହୁଏ (ଚିତ୍ର ନଂ–୨୦) ।

ଆମର ସ୍ୱରନଳୀ ବାୟୁନଳୀ ଭିତରେ ବଡ଼ ଓ ସାନ ହୋଇପାରେ । ତାକୁ ଢାକିଧରି ବାୟୁ ପ୍ରବେଶ କରାଇଲେ ସେ ଥରିଉଠେ ।

ଶବ୍ଦ କରିବାକୁ ହେଲେ ଆମକୁ ଫୁସ୍‌ଫୁସ୍‌ରୁ ପବନ ବାହାର କରିବାକୁ ହେବ । ବଡ଼ ଜୋର ଶବ୍ଦ କରିବାକୁ ହେଲେ ବହୁତ ପବନ ବାହାର କରିବାକୁ ହେବ ।



ଚିତ୍ର ନଂ-୨୦

କଣ୍ଠ ସ୍ୱରନଳୀ, ବୟସ ବୃଦ୍ଧି ସଙ୍ଗେ ଲମ୍ବ ହୁଏ । ତେଣୁ ଆମର ସ୍ୱର ମୋଟା ହୁଏ । ପୁଅପିଲାଙ୍କ ସ୍ୱରନଳୀ ଝିଅପିଲାଙ୍କ ସ୍ୱରନଳୀ ତୁଳନାରେ ବେଶି ବଦଳିଥାଏ ।

# ଶ୍ରବଣ ଯନ୍ତ୍ର

**କାନ କି କି କାର୍ଯ୍ୟ କରେ ?**

କାନ ଶବ୍ଦତରଙ୍ଗ ଗ୍ରହଣ କରି ସମ୍ବାଦରେ ପରିଣତ କରି ମସ୍ତିଷ୍କକୁ ପଠାଏ । ଏଠାରେ ଏକ ଶ୍ରବଣ ଯନ୍ତ୍ରର କାର୍ଯ୍ୟକାରୀ ପ୍ରଣାଳୀ ସମ୍ପର୍କରେ ବୁଝା ଯାଇଅଛି । ଏହି ଶ୍ରବଣ ଯନ୍ତ୍ର ଶବ୍ଦତରଙ୍ଗ ଧରିରଖି ତାକୁ ଭାଷାର ଶବ୍ଦରେ ପରିଣତ କରି ମସ୍ତିଷ୍କକୁ ଜଣାଏ (ଚିତ୍ର ନଂ—୨୧) ।




ଚିତ୍ର ନଂ-୨୧ ଶ୍ରବଣ ଯନ୍ତ୍ର

ଆମେ ଯେଉଁ ଶବ୍ଦ ଶୁଣୁ ତାହା ତରଙ୍ଗ ଆକାରରେ କାନରେ ପ୍ରବେଶ କରେ ।

ଶବ୍ଦତରଙ୍ଗ ଆଖିକୁ ଦେଖାଯାଏ ନାହିଁ । ମାତ୍ର କିଛି ଅନୁଭବ କରି ହୁଏ ।

କାନର କାହାଳୀ ଭିତରେ ଲୋମ ଓ ମହମ ଥାଏ । ତେଣୁ ବାହାର ମଇଳା ଭିତରକୁ ଯାଇପାରେ ନାହିଁ ।

ଡ୍ରମ୍‌ରେ ଶବ୍ଦତରଙ୍ଗ କମ୍ପନ ସୃଷ୍ଟି କରେ । ଏହି କମ୍ପନ ମଝି କାନରେ ଥିବା ଛୋଟ ହାଡ଼କୁ ଥରାଇଦିଏ ।

ଏହି କମ୍ପିତ ହାଡ଼ ଏଠାରେ ତରଙ୍ଗ (ଢେଉ) ସୃଷ୍ଟି କରେ ।

ଭିତର କାନରେ ଥିବା ତରଳ ପଦାର୍ଥରେ ଛୋଟ ଛୋଟ ସ୍ନାୟୁ ଥାଆନ୍ତି । ଏହି ସ୍ନାୟୁଗୁଡ଼ିକ ମସ୍ତିଷ୍କକୁ ଶବ୍ଦ ବାର୍ତ୍ତା କିମ୍ବା କିଛି ମାତ୍ରାରେ ସଂଶୋଧିତ ବାର୍ତ୍ତା ପଠାନ୍ତି ।

ଆମେ କେବଳ କାନର ବାହାର ଅଂଶଟି ଦେଖିପାରୁ । କିନ୍ତୁ ବାହାର କାନକୁ ଛାଡ଼ିଦେଲେ କାନର ଅନେକ ଅଂଶ ଅଛି, ଯାହାକି ଆମେ ବାହାରୁ ଦେଖିପାରୁନାହିଁ । ବାହାର କାନ ମଝିରେ ଥିବା କଣାଟି ଏକ, ସୁଡ଼ଙ୍ଗ ଆକାରରେ ଭିତର କାନକୁ ଯାଇଥାଏ । (ଚିତ୍ର ନଂ—୨୨)




ଚିତ୍ର ନଂ-୨୨ ଶରୀରର ଭାରସାମ୍ୟ ରକ୍ଷାକାରୀ ତିନୋଟି ନଳୀ

ଆମର ଭିତର କାନ ଏକ ଗୁଡ଼େଇ ହୋଇଥିବା ନଳୀ । ଏହି ନଳୀ ଭିତରେ ଏକପ୍ରକାର ତରଳ ପଦାର୍ଥ ଥାଏ, ଯାହା ଶବ୍ଦକୁ ଧରିପାରେ । ଏହାଛଡ଼ା ତିନୋଟି ଅଧିକା ନଳୀ ଥାଏ, ଯାହା ଭାରସାମ୍ୟ ରକ୍ଷା କରେ ।

**ଶବ୍ଦ ତରଙ୍ଗ କିପରି ?**

ବେଲୁନ୍ ଆଡ଼କୁ ମୁହଁ କରି ଗୋଟେ ପଟିର ନଳୀରେ କଥା କହିଲେ ଶବ୍ଦ ଢେଉ ଯୋଗୁଁ ବେଲୁନ୍ ଥରିବ (ଚିତ୍ର ନଂ—୨୩) ।



ଚିତ୍ର ନଂ-୨୩

**ଆମର ଦୁଇଟି କାନ କାହିଁକି ?**

ତୁମେ ତୁମର ଦୁଇଟି ଆଖି ଓ ଗୋଟିଏ କାନ ଭଲ କରି ବନ୍ଦ କରିନିଅ । ତା'ପରେ ତୁମର କୌଣସି ସାଙ୍ଗକୁ ତୁମ ଆଖପାଖରେ



ଚିତ୍ର ନଂ-୨୪

ଗୋଟିଏ ବାଜୁଥିବା ରେଡ଼ିଓ ରଖିବାକୁ କୁହ । ଗୋଟିଏ କାନ ସାହାଯ୍ୟରେ ରେଡ଼ିଓର ଶବ୍ଦ ଶୁଣି ତା'ପାଖକୁ ଯିବାକୁ ଚେଷ୍ଟା କର । ତୁମେ ରେଡ଼ିଓ ପାଖରେ ପହଞ୍ଚିପାରିବ କି ? ଏହା ପରେ ଦୁଇଟି କାନ ଖୋଲା କରି ରେଡ଼ିଓ ପାଖକୁ ଯିବାକୁ ଚେଷ୍ଟା କର, ଦେଖିବ ତୁମେ ଅତି ସହଜରେ ରେଡ଼ିଓ ପାଖରେ ପହଞ୍ଚିପାରିବ (ଚିତ୍ର ନଂ—୨୪) ।

# ଆଖି କିପରି କାର୍ଯ୍ୟ କରେ ?

ଆଖି ଗୋଟେ କାମେରା ସଦୃଶ । କାମେରା ଭଳି ଆଖି ବାହାରୁ ଆଲୋକ ରଶ୍ମି ଗ୍ରହଣ ସମୟରେ ସଙ୍କୁଚନ କରିଦିଏ ଓ ଡୋଳା ପଛ ପଟେ ଗୋଟେ ଛୋଟ ଚିତ୍ର ସୃଷ୍ଟି କରେ । ସ୍ନାୟୁ ସାହାଯ୍ୟରେ ଛବିଟି ମସ୍ତିଷ୍କକୁ ଯାଏ (ଚିତ୍ର ନଂ–୨୫) ।




ଚିତ୍ର ନଂ-୨୫

ଚିତ୍ର ନଂ–୨୬ କୁ ଭଲ ଭାବରେ ଦେଖ । ଏଥିରେ ଆଖିର ବିଭିନ୍ନ ଅଂଶ ଦେଖା ଯାଇଅଛି । ଆମେ ମଧ୍ୟ ଦେଖିପାରିବା ଯେ, ଛୋଟ ଛୋଟ ମାଂସପେଶୀ ଆଖିର ଆକାର ଓ ଏହା ଭିତରେ ଥିବା ଯବକାଚ (Lens)କୁ କିପରି ଭାବରେ ପରିବର୍ତ୍ତନ କରୁଛି ।




ଚିତ୍ର ନଂ-୨୬

ତୁମର ଆଖି କିପରି କାର୍ଯ୍ୟ କରେ ତାହା ଚିତ୍ର ନଂ—୨୭ ଓ ତା'ପର ଲେଖାରୁ ଜାଣିପାରିବ ।




ଚିତ୍ର ନଂ-୨୭

ଆଲୋକରଶ୍ମି ଛବି ଉପରେ ପଡ଼ି ଛବିକୁ ଦେଖିବାରେ ସାହାଯ୍ୟ କରେ ।

ଛବିରୁ ଆଲୋକରଶ୍ମି ପ୍ରଥମ ଯବକାଚକୁ ପ୍ରବେଶ କରେ । ଏଠାରେ ଯବକାଚ ଆଲୋକରଶ୍ମିକୁ ବଙ୍କେଇ ଦିଏ । ତା'ପରେ ଆଖି ଡୋଳା ଦେଇ ବକ୍ର ରଶ୍ମି ଆଖି ଭିତରକୁ ଯାଏ । ଏହି ଗୋଲାକାର ଚକ୍ଷୁପଟ ସଙ୍କୁଚନ ଓ ପ୍ରସାରଣ ଦ୍ୱାରା ଛୋଟ ବଡ଼ ହୁଏ । ଅତି ଉଜ୍ଜ୍ୱଳ ଆଲୋକରୁ ଆଖିକୁ ରକ୍ଷା କରିବା ପାଇଁ ଏହା ଛୋଟ ହୋଇଯାଏ ଓ କମ୍ ଉଜ୍ଜ୍ୱଳ ଆଲୋକରେ ଭଲ ଦେଖିବା ପାଇଁ ବଡ଼ ହୁଏ ।

ଦ୍ୱିତୀୟ ଯବକାଚରେ ଲାଗି ରହିଥିବା ମାଂସପେଶୀ ଏହାକୁ ଛୋଟ ଓ ବଡ଼ କରେ, ଯାହା ଫଳରେ ଛବିଟି ପଛରେ ଥିବା ପରଦାରେ ଠିକ୍ ଆକାରରେ ପଡ଼େ ।

ଆଖି ଡୋଳା ଦେଇ ଆସିଥିବା ବକ୍ର ରଶ୍ମି ଦ୍ୱିତୀୟ ଯବକାଚକୁ ପାରି ହେଇ ସ୍ନାୟୁକୋଷ ଉପରେ ଏକ ଓଲଟା ଛବି ସୃଷ୍ଟି କରେ ।

ଏହି ସ୍ନାୟୁ ସବୁ ଛବିକୁ ମସ୍ତିଷ୍କକୁ ପଠାଏ । ମସ୍ତିଷ୍କ ଓଲଟା ଛବିକୁ ସିଧା କରିଦିଏ ।

## ଦୁଇ ଆଖି ଅଛି କାହିଁକି ?

ଏହି ପ୍ରଶ୍ନର ଉତ୍ତର ଆମେ ନିଜେ ପରୀକ୍ଷା କରି କହିପାରିବା । ତୁମେ ଗୋଟିଏ ଆଖି ବନ୍ଦ କରି, ଗୋଟିଏ ହାତରେ ଖଣ୍ଡେ ପେନ୍‌ସିଲ ବା କାଠି ଧରି ଓ ହାତ ପ୍ରସାରଣ କରି ଟିକେ ଦୂରରେ ଥିବା ଅନ୍ୟ ଏକ କାଠିକୁ କଡ଼ରୁ ସ୍ପର୍ଶ କରିବାକୁ ଚେଷ୍ଟା କର । ତୁମେ ନିର୍ଦ୍ଦିଷ୍ଟ କାଠିକୁ ଛୁଇଁବାରେ କଷ୍ଟ ଅନୁଭବ କରିବ । ଦୁଇ ଆଖି ଏକତ୍ର କାର୍ଯ୍ୟ କରି କେତେ ପାଖରେ ଅନ୍ୟ ଜିନିଷ ଅଛି, ଜାଣିବାରେ ସାହାଯ୍ୟ କରେ (ଚିତ୍ର ନଂ—୨୮) ।




ଚିତ୍ର ନଂ-୨୮

## ଦୁଇ ଆଖି କିପରି କାର୍ଯ୍ୟ କରେ ?

ପ୍ରତି ଆଖି କୌଣସି ଏକ ପଦାର୍ଥକୁ ଅଲଗା ଭାବରେ ଦେଖନ୍ତି । ଏହି ଦୁଇଟି ଅଲଗା ଛବି ସ୍ନାୟୁଦ୍ୱାରା ତୁମ ମସ୍ତିଷ୍କକୁ ଯାଏ । ମସ୍ତିଷ୍କରେ ଏହି ଦୁଇଟି ଛବି ମିଶିକରି ଏକ ହୁଅନ୍ତି ।

ତୁମର ଡାହାଣ ଆଖି କୌଣସି ଏକ ପଦାର୍ଥ ଡାହାଣ ପଟକୁ ଅଧିକ ଦେଖେ ଓ ତୁମର ବାମ ଆଖି ପଦାର୍ଥର ବାମ ପଟକୁ ଅଧିକ ଦେଖେ (ଚିତ୍ର ନଂ—୨୯) ।

ପରୀକ୍ଷା କରିବା ପାଇଁ ତୁମେ ଖଣ୍ଡେ କାଗଜରେ ଗୋଟିଏ ଶବ୍ଦ ବଡ଼ ବଡ଼ ଅକ୍ଷରରେ ଲେଖ । ଗୋଟେ ପେନ୍‌ସିଲ୍‌କୁ ସିଧାଭାବେ କାଗଜ




ଚିତ୍ର ନଂ-୨୯

ଓ ତୁମ ଆଖି ମଝିଆମଝି ଧର । ଯେକୌଣସି ଆଖି ବୁଜି ଶବ୍ଦକୁ ଦେଖ, ତୁମେ ଦେଖିବ ଶବ୍ଦର କିଛି ଅଂଶ ତୁମକୁ ଦେଖାଯାଉ ନାହିଁ । କିନ୍ତୁ ଦୁଇ ଆଖିରେ ଶବ୍ଦକୁ ନିରୀକ୍ଷଣ କଲେ ତୁମେ ପୂରା ଶବ୍ଦଟି ଦେଖିପାରିବ ।

# ନାକର କାମ କ'ଣ ?

ତୁମେ ତୁମ ନାକଦ୍ୱାରା ପ୍ରଧାନତଃ ଶ୍ୱାସକ୍ରିୟା ସମ୍ପାଦନ କର । ନାକ ଭିତରେ ଥିବା ବିଭିନ୍ନ ପଦାର୍ଥ ବାୟୁକୁ ପରିଷ୍କାର କରି, ବିଶୁଦ୍ଧ ବାୟୁକୁ ଫୁସ୍‌ଫୁସ୍‌କୁ ପଠାଏ ।



ଚିତ୍ର ନଂ-୩୦

ତୁମ ନାକ ଭିତରେ ଦୁଇଟି ନଳୀ ଅଛି । ଯାହାକି ତୁମ ମୁଖମଣ୍ଡଳର ପଛରେ ଥିବା ଏକ ଗାତ ଭିତରକୁ ପ୍ରବେଶ କରିଅଛି । ଏହି ଗାତ ଭିତରେ ମହମ ପରି ଆର୍ଦ୍ର ପଦାର୍ଥ ଅଛି । ଏହି ଗାତ ଭିତର ଅଂଶ ଗରମ ମଧ୍ୟ । ଏଠାରେ ବାୟୁ ପରିଷ୍କାର ହୋଇ ଗରମ ହୁଏ ଓ ତା'ପରେ ଫୁସ୍‌ଫୁସ୍ ଭିତରକୁ ପ୍ରବେଶ କରେ ।

ବାୟୁମଣ୍ଡଳରେ ବିଭିନ୍ନ ମଇଳା ପଦାର୍ଥ ଓ ଅନିଷ୍ଟକାରୀ ଜୀବାଣୁ ଅଛନ୍ତି । ନାକ ସେ ସବୁକୁ ଫୁସ୍‌ଫୁସ୍ ଭିତରକୁ ଯିବାକୁ ଦିଏ ନାହିଁ ।

ନାକ ଭିତରେ ଓ ପ୍ରବେଶ ଦ୍ୱାରର ଦୁଇ ପାଖରେ ଛୋଟ ଛୋଟ କେଶ ଥାଏ । ଏଠାରେ ପ୍ରଥମେ, ଜୀବାଣୁ ଓ ମଇଳା ଜିନିଷ ରହିଯାଇ ବିଶୁଦ୍ଧ ପବନ ଭିତରକୁ ଯାଏ ।




ଚିତ୍ର ନଂ-୩୧

ଉପରେ ଦିଆ ଯାଇଥିବା ଚିତ୍ର ନଂ—୩୧ ଓ ନିମ୍ନୋକ୍ତ ଲେଖାରେ ନାକ ଭିତରେ ବାୟୁ କିପରି ବିଶୋଧନ ହୁଏ, ଦର୍ଶାଇ ଦିଆ ଯାଇଅଛି ।

ତୁମେ ଯେତେବେଳେ ନିଶ୍ୱାସ ନିଅ, ବାୟୁ ସହିତ ମିଶିଥିବା ଧୂଳି ଓ ଜୀବାଣୁ ତୁମ ନାକ ଭିତରକୁ ପ୍ରବେଶ କରେ । ଚିତ୍ରରେ ଦେଖା ଯାଇଥିବା ଫୁଲ ଓ ଏହିପରି ଗୁଡ଼ିଏ ପଦାର୍ଥର କିଛିନା କିଛି ଗନ୍ଧ ରହିଥାଏ । ବାୟୁ ସହିତ ମିଶି ଏହି ଗନ୍ଧ ମଧ ନାକ ଭିତରକୁ ଯାଏ ।

ଜୀବାଣୁ ଓ ଧୂଳି ତୁମ ନାକ ଭିତରେ ଥିବା ବାଳ ଓ ଅଠାଳିଆ ପଦାର୍ଥକୁ ପାରିହୋଇ ଯାଇପାରନ୍ତି ନାହିଁ । କିନ୍ତୁ କୌଣସି ଏକ ଗନ୍ଧ ଏହି ସବୁକୁ ପାରହୋଇ ଗନ୍ଧ ବାରିବା ବାଳ ପାଖରେ ପହଞ୍ଚେ ଓ ସ୍ନାୟୁ ଦ୍ୱାରା ତୁମ ମସ୍ତିଷ୍କକୁ ଯାଏ ।

ନାକ ଭିତରେ ଥିବା ରକ୍ତନଳୀ ଭିତରକୁ ଆସୁଥିବା ବିଶୁଦ୍ଧ ବାୟୁକୁ ଗରମ କରିଦିଏ । ଏହି ବିଶୁଦ୍ଧ ଏବଂ ଗରମ ବାୟୁ ତୁମ ଫୁସ୍‌ଫୁସ୍‌କୁ ଯାଏ ।

ଏହି ଭାବରେ ନାକ ତୁମକୁ ଶୁଙ୍ଘିବାରେ ଓ ଶ୍ୱାସକ୍ରିୟା ସମ୍ପାଦନ କରିବାରେ ସାହାଯ୍ୟ କରେ ।

# ଅନୁଭବ କରିବା ଯନ୍ତ୍ର

ଚମରେ ଛୋଟ ଛୋଟ ସ୍ନାୟୁ ଥାଏ । ଏହି ସ୍ନାୟୁ ସାହାଯ୍ୟରେ ତୁମେ ଗରମ, ଥଣ୍ଡା, ନରମ, ଟାଣ, ପାଲିସ ବା ଖଦଖଦଡ଼ିଆ ଜାଣିପାର । ତୁମର ଆଙ୍ଗୁଳିରେ ବହୁତ ସ୍ନାୟୁ ଅଛି । ତୁମେ ଆଙ୍ଗୁଳି ଚାଳନା ଦ୍ୱାରା ମଧ୍ୟ ଅନୁଭବ କରିପାର । ତୁମ ଚର୍ମ ଓ ଶରୀରର ସମସ୍ତ ସ୍ନାୟୁ ସାହାଯ୍ୟରେ ମସ୍ତିଷ୍କ ‘ଅନୁଭବ କରିବା ଖବର ପାଏ ।

ଅନେକ ସମୟରେ ମଧ୍ୟ ଏହି ଖବର ଠିକ୍ ନ ଥାଏ । ଯାହା ଫଳରେ ମସ୍ତିଷ୍କକୁ ବୋକା ବନିବାକୁ ହୁଏ । ତେଣୁ ଛୁଇଁବା, ଅନୁଭବ କରିବା ଓ ଜାଣିବା ଖବର ମସ୍ତିଷ୍କକୁ ଯାଇ ସେଠାରେ ବିଶ୍ଳେଷଣ ହୁଏ । ବିଶ୍ଳେଷଣ ପ୍ରକ୍ରିୟାରେ ଅନେକ ସମୟରେ ଭୁଲ୍ ମଧ୍ୟ ହୁଏ (ଠିକ୍ ବା ଭୁଲ୍ ଜାଣି ହୁଏ ନାହିଁ) ।



# ତୁମ ମସ୍ତିଷ୍କ କିପରି କାର୍ଯ୍ୟ କରେ ?

ତୁମର ମସ୍ତିଷ୍କ ଶରୀରର ସବୁଠାରୁ କାର୍ଯ୍ୟବ୍ୟସ୍ତ ଅଙ୍ଗ । ଏହା ଏକ ସମୟରେ ବହୁତ ଖବର ଗ୍ରହଣ କରେ । କେତେକ ଖବର ରଖିଦିଏ ଓ କେତେକ ଖବର ପୁନଃ ପ୍ରେରଣ କରେ ।

ତୁମର ପାଞ୍ଚଟି ଇନ୍ଦ୍ରିୟ ଅଛି ଯଥା—ଶ୍ରବଣ (କାନ), ଦର୍ଶନ (ଆଖି), ଆଘ୍ରାଣ (ନାକ), ସ୍ୱାଦ (ଜିଭ), ସ୍ପର୍ଶ (ଚର୍ମ) । ଏହିସବୁ ଇନ୍ଦ୍ରିୟମାନଙ୍କ ସାହାଯ୍ୟରେ ତୁମ ମସ୍ତିଷ୍କ ବାହାରର ଖବର ପାଏ ଓ ତାହାକୁ ବିଶ୍ଳେଷଣ କରି ପ୍ରକୃତ ସେ ସବୁ କ'ଣ ଜାଣେ ।

ତୁମ କାନ ଶବ୍ଦ ଶୁଣେ । ମସ୍ତିଷ୍କ କହେ, ଏହା ଗାଡ଼ିର ଶବ୍ଦ (ଚିତ୍ର ନଂ-୩୨) ।

ବଲ ଆଘାତରେ ଘରର ଝରକା କାଚ ଭାଙ୍ଗିବାର ଦୃଶ୍ୟ ତୁମ ଆଖି ଦେଖେ । ତୁମ ମସ୍ତିଷ୍କ କହେ ଏଠାରେ ଖେଳ ନାହିଁ (ଚିତ୍ର ନଂ-୩୩) ।

ତୁମର ନାକ ଗନ୍ଧ ବାରେ । ତୁମର ମସ୍ତିଷ୍କ କହେ ଏହା ଖିରି ହୋଇପାରେ (ଚିତ୍ର ନଂ- ୩୪) ।



ଚିତ୍ର ନଂ-୩୨



ଚିତ୍ର ନଂ-୩୩



ଚିତ୍ର ନଂ-୩୪

ତୁମର ଜିଭ କହେ 'ଖଟା' । ତୁମର ମସ୍ତିଷ୍କ କହେ ଏହା ପାଚି ନାହିଁ (ଚିତ୍ର ନଂ-୩୫) ।

ତୁମର ଆଙ୍ଗୁଳି ଛୁଇଁକରି କୁହେ, ''ଏହା ବାଳ'' । ତୁମର ମସ୍ତିଷ୍କ କହେ, ''ଏହା ଦାଢ଼ି'' (ଚିତ୍ର ନଂ-୩୬) ।



ଚିତ୍ର ନଂ-୩୫



ଚିତ୍ର ନଂ-୩୬

ତୁମ ମସ୍ତିଷ୍କ ଏକ ଘର ପରି । ଏହା ଭିତରେ ବହୁତଗୁଡ଼ିଏ କକ୍ଷ ଅଛି । ଏହି କକ୍ଷଗୁଡ଼ିକ ବିଭିନ୍ନ ପ୍ରକାରର କାର୍ଯ୍ୟ କରନ୍ତି, ଯଥା—ଖବର ଗ୍ରହଣ କରିବା, ନିଷ୍ପତ୍ତି ନେବା, ନିର୍ଦ୍ଦେଶ ଦେବା, ଖବର ମନେ ରଖିବା, ନିୟନ୍ତ୍ରଣ କରିବା ଇତ୍ୟାଦି ଇତ୍ୟାଦି ।

**ଖବର ଗ୍ରହଣ କରିବା କକ୍ଷ**

ମସ୍ତିଷ୍କ ତୁମ ପଞ୍ଚ ଇନ୍ଦ୍ରିୟରୁ ବହୁତ ପ୍ରକାରର ଖବର ସଂଗ୍ରହ କରେ, ତା'ପରେ ଖବର ମନେ ରଖିବା କକ୍ଷକୁ ପଠାଏ ।

**ନିଷ୍ପତ୍ତି ଓ ନିର୍ଦ୍ଦେଶ କକ୍ଷ**

ତୁମ ଇନ୍ଦ୍ରିୟରୁ ଅତ୍ୟନ୍ତ ଜରୁରୀ ଖବର ପାଇ କ'ଣ କରାଯିବ, ମସ୍ତିଷ୍କ ବିଚାର କରେ, ଅଦରକାରୀ ଖବରକୁ ଅଲଗା କରେ ଓ ମାଂସପେଶୀକୁ ପ୍ରେରଣ କରେ ।

**ଖବର ମନେରଖିବା କକ୍ଷ**

ତୁମର ମନେରଖିବା କକ୍ଷ ଖବର ସବୁ ଅନୁଧ୍ୟାନ କରି ତାହା କ'ଣ ଜାଣେ ।

**ନିୟନ୍ତ୍ରଣ କକ୍ଷ**

ଏହା ତୁମ ଶରୀରକୁ ଠିକ୍ ବାଟରେ ରଖେ । ହୃତ୍ସ୍ପନ୍ଦନ ଠିକ୍ ରଖେ, ନିଶ୍ୱାସ ପ୍ରଶ୍ୱାସ ଓ ଖାଦ୍ୟଯନ୍ତ୍ରର ଠିକ୍ ଚାଳନ କରେ । ତୁମେ ଶୋଇଥିବା ଅବସ୍ଥାରେ ମଧ୍ୟ ଏହା କାର୍ଯ୍ୟ କରୁଥାଏ ।

**ଜରୁରୀ ଖବର ସଂଗ୍ରହ କେନ୍ଦ୍ର**

ଉପରୋକ୍ତ କକ୍ଷଗୁଡ଼ିକୁ ଛାଡ଼ିଦେଲେ, ତୁମ ମସ୍ତିଷ୍କରେ ଆଉ ଗୋଟିଏ କକ୍ଷ ଅଛି, ଯେଉଁଠି ସମସ୍ତ ଖବର ପ୍ରଥମେ ପହଞ୍ଚେ । ଅତ୍ୟନ୍ତ ଜରୁରୀ

ଖବର ଉପରେ ତତ୍‌କ୍ଷଣାତ୍ କାର୍ଯ୍ୟ ହୁଏ । ଏହା ତୁମକୁ ଜାଗ୍ରତ କରେ । ପ୍ରସ୍ତୁତ ହୋଇ ଯିବାକୁ ବା କାର୍ଯ୍ୟ କରିବାକୁ କୁହେ ।

ସ୍ନାୟୁ ସାହାଯ୍ୟରେ ତୁମର ବିଭିନ୍ନ ଇନ୍ଦ୍ରିୟରୁ ଖବର ମସ୍ତିଷ୍କକୁ ଯାଏ ଓ ମସ୍ତିଷ୍କରୁ ଆଦେଶ ଆଉ କେତେକ ସ୍ନାୟୁ ସାହାଯ୍ୟରେ ତୁମର ସମସ୍ତ ମାଂସପେଶୀକୁ ଯାଏ । ତୁମର ମସ୍ତିଷ୍କରେ ଥିବା ସହସ୍ର ସ୍ନାୟୁକୋଷ ଖବର ସଂଗ୍ରହ କରି ରଖେ, ତୁମର ପଛ ପଞ୍ଜରା ହାଡ଼ ଭିତରେ ଥିବା ଏକ ନଳୀ ଦେଇ ତୁମ ଶରୀରର ସମସ୍ତ ଖବର ଯିବାଆସିବା କରେ ।




ଚିତ୍ର ନଂ-୩୭ ମସ୍ତିଷ୍କରେ ଥିବା କେତେକ କକ୍ଷ

# ଶରୀରରେ ହାଡ଼ କିପରି ଖଞ୍ଜା ହୋଇଥାଏ ?

କେବେ ଭାବିଛକି ଶରୀରରେ ହାଡ଼ ନ ଥିଲେ ତୁମ ଆକାର କିପରି ହୋଇଥାନ୍ତା ! ବୋଧହୁଏ ଏହା ଏକ ଗୋଲାକାର ମାଂସପିଣ୍ଡୁଳା ପରି ହୋଇଥାନ୍ତା ।

ମଣିଷ ଶରୀରରେ ୨୦୬ଟି ହାଡ଼ ଥାଏ । ଏହିଗୁଡ଼ିକ ଶରୀରର ବିଭିନ୍ନ ସ୍ଥାନରେ ଖଞ୍ଜା ହୋଇଥାନ୍ତି ଓ ଆମକୁ ବିଭିନ୍ନ ପ୍ରକାର କାର୍ଯ୍ୟ କରିବାରେ ସାହାଯ୍ୟ କରିଥାନ୍ତି । ଆସ ତେବେ ଜାଣିବା ଏହିସବୁ ହାଡ଼ କିପରି ଖଞ୍ଜା ହୋଇଥାଏ ।

ଯେଉଁ ସ୍ଥାନରେ ତୁମର ଗୋଟିଏ ହାଡ଼ ଅନ୍ୟ ହାଡ଼ ସହିତ ଯୋଗ ହୋଇଥାଏ ସେ ସ୍ଥାନକୁ ଗଣ୍ଠି କୁହାଯାଏ । ଚିତ୍ର ନଂ—୩୮ ରେ କଙ୍କାଳରେ ତୁମର ଗଣ୍ଠିସବୁ କିପରି କାର୍ଯ୍ୟ କରେ ଦର୍ଶାଇ ଦିଆ ଯାଇଅଛି ।




ଚିତ୍ର ନଂ-୩୮

୧) ତୁମେ ଏହି ଗଣ୍ଠିଗୁଡ଼ିକ ବହୁତ ବ୍ୟବହାର କର । ଏହା ଠିକ୍ ଭାବରେ କାମ ନ କଲେ, ତୁମେ ଚାଲିପାରିବ ନାହିଁ, ଖାଇପାରିବ ନାହିଁ, ଦୌଡ଼ିପାରିବ ନାହିଁ, ଗଛ ଚଢ଼ିପାରିବ ନାହିଁ ଇତ୍ୟାଦି ।

୨) ପାଦର ଛୋଟ ଛୋଟ ଗଣ୍ଠି ଚାଳନା ଫଳରେ ତୁମେ ଦୌଡ଼ିପାର ।

୩) କଙ୍କାଳର ଏହି ହାଡ଼ଗୁଡ଼ିକ ଥାକ ଥାକ ହୋଇଥାଏ । ଏହା ସାହାଯ୍ୟରେ ତୁମେ ନଇଁପାର, ବସ ଉଠ୍ କରିପାର ଇତ୍ୟାଦି ।

**ମୁଣ୍ଡ :—** ତୁମର ମୁଣ୍ଡର ଖପୁରି ଏକ ହାଡ଼ରେ ତିଆରି ହୋଇଥିବା ପଗଡ଼ି ପରି । ଏହା ତୁମର ମସ୍ତିଷ୍କକୁ ରକ୍ଷା କରେ । ଏହାର ଆଗରେ ଥିବା ଦୁଇ କଣାରେ ତୁମର ଆଖି ଖଞ୍ଜା ହୋଇଥାଏ । ତୁମର ମୁଣ୍ଡ ପଛ ହାଡ଼ର ଉପରେ ବସିଥାଏ, ଠିକ୍ ଯେପରି ଏକ ରିଙ୍ଗ ଉପରେ ଗୋଟିଏ ପେଣ୍ଡୁ ରଖିଲା ଭଳି । ତୁମେ ତେଣୁ ମୁଣ୍ଡକୁ ଏପାଖ ସେପାଖ କରିପାର ।




ଚିତ୍ର ନଂ-୩୯

**ବାହୁ :—** ତୁମେ ଯେତେବେଳେ ବାହୁକୁ ଚାଳନା କର, ସେତେବେଳେ ଜାଣିପାରିବ ଯେ ଏହା ବଲ—ସକେଟ୍ ପରି ବୁଲୁଛି ।

**ପଛହାଡ଼ :—** ତୁମେ ତୁମର ଆଙ୍ଗୁଳିକୁ ପଛହାଡ଼ ଉପରେ ବୁଲାଇ ଦେଖ । ଦୁଇ କୁଦିଆ ହାଡ଼ ମଝି ଗହିରିଆ । ଏହାକୁ ଗଣ୍ଠି କୁହାଯାଏ । ଏହା ଥାକ ଥାକ ହୋଇଥାଏ । ମାଂସପେଶୀ ତା'ଭିତରେ କୁସନ୍ ପ୍ୟାଡ୍ ସଦୃଶ ଯୋଗ ହୋଇ ଥାଆନ୍ତି । ତୁମେ ଯେତେବେଳେ ବଙ୍କା ହୋଇଯାଅ, ସେତେବେଳେ ତୁମର କୁଦ ପରି ହାଡ଼ ଖଣ୍ଡ ମଧ୍ୟରେ ଦୂରତା ବଢ଼ିଯାଏ ।

**ବୁଢ଼ା ଆଙ୍ଗୁଳି ହାଡ଼ :—** ବୁଢ଼ା ଆଙ୍ଗୁଳି ହାଡ଼ ଗଣ୍ଠି ଏପରି ଭାବରେ ବୁଲେ, ଯାହାଦ୍ୱାରା କି ତୁମେ ଅନ୍ୟ ଆଙ୍ଗୁଳି ଓ ବୁଢ଼ା ଆଙ୍ଗୁଳି ଦ୍ୱାରା ଗୋଟିଏ ଜିନିଷ ଧରିପାରିବ ।

**ପାଦ ଆଙ୍ଗୁଳି ଗଣ୍ଠି :—** ପାଦ ଆଙ୍ଗୁଳି ଗଣ୍ଠି ଓ ବୁଢ଼ା ଆଙ୍ଗୁଳି ଗଣ୍ଠି ଲାଗିଥିବା କବାଟ କବଜା ପରି ।

**କହୁଣି ଓ ଆଣ୍ଠୁ :—** ଏହି ହାଡ଼ଗୁଡ଼ିକ ଅନ୍ୟ ପ୍ରକାରର ଗଣ୍ଠି (କବଜା) ଦ୍ୱାରା ଚାଳିତ ହୁଏ । କାରଣ ଏଗୁଡ଼ିକ ବିଭିନ୍ନ ଦିଗକୁ ବିଭିନ୍ନ ପ୍ରକାରରେ ବୁଲେ ।

**ଗୋଇଠି (ପାଦମୂଳ) :—** ଗୋଇଠି (ପାଦମୂଳ) ଓ ମଣିବନ୍ଧରେ ଛୋଟ ଛୋଟ ହାଡ଼ ଥାଏ । ଯଦ୍ଦ୍ୱାରା ତୁମେ ଶୀଘ୍ର ଶୀଘ୍ର ଗତିଶୀଳ ହୋଇପାର । ହାଡ଼ର ଶେଷ ଭାଗ ଏପାଖ ସେପାଖ ହୋଇପାରେ ।

ସବୁ ପ୍ରକାର ଗଣ୍ଠିରେ ଏକ ପ୍ରକାର ତରଳ ପଦାର୍ଥ (ତେଲ) ଥାଏ, ଯାହାକି ଏହାର ସୁ—ଚାଳନାରେ ସାହାଯ୍ୟ କରେ । ଏହି ତେଲ ନ ଥିଲେ ଗଣ୍ଠିଗୁଡ଼ିକ ଭାଙ୍ଗି ଯାଆନ୍ତା ।

**ଅସ୍ଥିବନ୍ଧ ବା ଅସ୍ଥି :—** ଅସ୍ଥିବନ୍ଧ ବା ଅସ୍ଥି ସଂଯୋଜକ ଝିଲ୍ଲୀ ସାହାଯ୍ୟରେ ଗଣ୍ଠି ନିଜ ଜାଗାରେ ଠିକ୍ ଭାବରେ ରହେ, ଏକ ପ୍ରକାର ଅଧିକା ଚର୍ମ ଢାଙ୍କୁଣୀ ଗଣ୍ଠି ଉପରେ ଥାଏ, ଯଦ୍ଦ୍ୱାରା ଗଣ୍ଠି ତେଲ ଠିକ୍ ସ୍ଥାନରେ ରହିପାରେ ।

ତୁମର କାନ ଓ ନାକ ଉପାସ୍ଥି ଓ ଅସ୍ଥିତନ୍ତୁରେ ତିଆରି । ଏହା ହାଡ଼ ନୁହେଁ । ଏହାକୁ ତୁମେ ବଙ୍କା ବଙ୍କି କରିପାର ।

# ମାଂସପେଶୀ କିପରି କାର୍ଯ୍ୟ କରେ ?

ତୁମର ଶରୀର ଭିତରେ ଥିବା ମାଂସପେଶୀଗୁଡ଼ିକ ସ୍ନାୟୁ ଦ୍ଵାରା ତୁମ ମସ୍ତିଷ୍କ ସହିତ ସଂଯୋଗ ହୋଇଥାଏ । ସ୍ନାୟୁ ସାହାଯ୍ୟରେ ମସ୍ତିଷ୍କରୁ ଖବର ତୁମ ମାଂସପେଶୀ ପାଏ ଓ ଏହି ଖବର ବା ଆଦେଶ ଅନୁଯାୟୀ ମାଂସପେଶୀ କାର୍ଯ୍ୟ କରେ । ତୁମର ମସ୍ତିଷ୍କ ଏକ ସମୟରେ ଅନେକ ଖବର ବା ଆଦେଶ ପ୍ରେରଣ କରିପାରେ ଓ ଅନେକ ମାଂସପେଶୀକୁ କାର୍ଯ୍ୟରେ ଲଗାଇପାରେ ।

ମାଂସପେଶୀଗୁଡ଼ିକ ଯୋଡ଼ା ଯୋଡ଼ା ହୋଇ କାର୍ଯ୍ୟ କରନ୍ତି । ଚିତ୍ର ନଂ–୪୦ 'କ' ଓ 'ଖ'ରେ ହାତ ମାଂସପେଶୀର ଚାଳନା ଦେଖା ଯାଇଅଛି । ତୁମେ ହାତ ଚାଳନା ଦ୍ଵାରା ମାଂସପେଶୀ ଦେଖିପାରିବ । ତୁମର ହାଡ଼ଗୁଡ଼ିକୁ ଏହା କାର୍ଯ୍ୟକ୍ଷମ କରାଏ । ଅନ୍ୟାନ୍ୟ ମାଂସପେଶୀ ଶରୀରର ବିଭିନ୍ନ ଅଂଶକୁ କାର୍ଯ୍ୟକ୍ଷମ କରନ୍ତି । ଯଥା—ତୁମର ହୃତ୍‌ପିଣ୍ଡ, ଖାଦ୍ୟଯନ୍ତ୍ର ଇତ୍ୟାଦି । ମସ୍ତିଷ୍କରେ ଏକ ଅଂଶ ଶରୀରର ସମସ୍ତ ମାଂସପେଶୀଗୁଡ଼ିକୁ କାର୍ଯ୍ୟରେ ଲଗାଏ, ତୁମର ମାଂସପେଶୀଗୁଡ଼ିକ ହାଡ଼ ସାଙ୍ଗରେ ଏକ ପ୍ରକାର ଶକ୍ତ ତନ୍ତୁ (Tendon) ଦ୍ଵାରା ସଂଯୋଗ ହୋଇଥାଏ ।

ତୁମ ଶରୀର ଭିତରେ ଥିବା ମାଂସପେଶୀଗୁଡ଼ିକ ସ୍ନାୟୁଦ୍ଵାରା ତୁମ ମସ୍ତିଷ୍କ ସହିତ ସଂଯୋଗ ହୋଇଥାଏ । ସ୍ନାୟୁ ସାହାଯ୍ୟରେ ମସ୍ତିଷ୍କରୁ ଖବର ତୁମ ମାଂସପେଶୀକୁ ଯାଏ ଓ ଏହି ଖବର ବା ଆଦେଶ ଅନୁଯାୟୀ ମାଂସପେଶୀ କାର୍ଯ୍ୟ କରେ ।

**ତୁମର କଳପାଟି**

ମାଂସପେଶୀ ତୁମର କାନ ଉପର ଦେଇ ଉପରକୁ ଲମ୍ବିଥାଏ ।

**ପଛ ପଞ୍ଜରା ହାଡ଼**

ତୁମର ପଛ ପଞ୍ଜରା ହାଡ଼ ସହ ଥିବା ମାଂସପେଶୀ ପଞ୍ଜରାକୁ ସିଧା ରଖେ । ତୁମେ ଶୋଇଲା ବେଳେ ସେଗୁଡ଼ିକ ଅଳସୁଆମୀ କରନ୍ତି । ମସ୍ତିଷ୍କ ଆଦେଶ ଦେଲେ ସେଗୁଡ଼ିକ ପୁଣି କାର୍ଯ୍ୟ କରନ୍ତି ।




ଚିତ୍ର ନଂ-୪୦(କ)

ଚିତ୍ର ନଂ-୪୦(ଖ)

## ଗୋଡ଼ରେ ଥିବା ମାଂସପେଶୀ

ତୁମକୁ ସିଧା ଠିଆ ହେବାରେ ସାହାଯ୍ୟ କରେ, ତୁମର ବେକ ଓ ପଛ ପିଞ୍ଜରା ହାଡ଼ରେ ଥିବା ମାଂସପେଶୀ ପରି ଏହା ସିଧା ଠିଆ

ହେବା ଓ ସିଧା ଚାଲିବାରେ ସାହାଯ୍ୟ କରେ । ତୁମେ ଏହାର କାର୍ଯ୍ୟ ଆଦୌ ଜାଣିପାର ନାହିଁ । ଗୋଡ଼, ହାତ ଓ ମାଂସପେଶୀକୁ ସଂଯୋଗ କରୁଥିବା ଶକ୍ତ ତନ୍ତୁ, ସବୁ ତନ୍ତୁଠାରୁ ମଜବୁତ୍ । ଏହା ମଧ୍ଯ ବଡ଼ ଟାଣ, କାରଣ ଏହା ତୁମ ଶରୀରର ସମସ୍ତ ଓଜନକୁ ସମ୍ଭାଳି ଥାଏ ।

ତୁମେ ଯେତେବେଳେ ପାଦ ଚାଳନା କର, ସେତେବେଳେ ଆଣ୍ଠୁ ପାଖକୁ ଲାଗିଥିବା ମାଂସପେଶୀ ଉପରକୁ ଉଠେ ଓ ତଳକୁ ପଡ଼େ । ଏହା ତୁମେ ଜାଣିପାରିବ ।




ଚିତ୍ର ନଂ-୪୦(ଗ)

# ଚମର କାର୍ଯ୍ୟ କ'ଣ ?

ତୁମ ଶରୀର ଉପରେ ଚମର ଏକ ଛାଉଣି ଥାଏ । ତୁମେ ଏହାର ଉପର ପାଖ ଦେଖିପାର । କିନ୍ତୁ ଚମ ତଳେ କି ପ୍ରକାର କାର୍ଯ୍ୟ ହୁଏ ତାହା ତୁମେ ଜାଣିପାର ନାହିଁ ।

ତୁମର ଉପର ଚମ ଟେମଡ଼ ଓ ଶୁଷ୍କ । ଏହା ତୁମ ଶରୀରକୁ ଅନିଷ୍ଟକାରୀ ଜୀବାଣୁ ଓ ପ୍ରାକୃତିକ ବିପର୍ଯ୍ୟୟରୁ ରକ୍ଷା କରେ ଓ ଶରୀରର ଜଳୀୟଅଂଶକୁ ଶୁଷ୍କ ନ ହେବାରେ ସାହାଯ୍ୟ କରେ (ଚିତ୍ର ନଂ–୪୧ ଦେଖ) ।




ଚିତ୍ର ନଂ-୪୧

ଉପର ଚମର ଠିକ୍ ତଳେ ଆଉ ଏକ ସ୍ତରର ଚମ ଅଛି, ଯେଉଁଠାରେ ଉପର ଚମ କୌଣସି କାରଣରୁ ନଷ୍ଟ ହୋଇଗଲେ, ନୂଆ ଚମ ଏଠାରୁ

ସୃଷ୍ଟି ହୁଏ । ଏହାର କ୍ଷୁଦ୍ର କ୍ଷୁଦ୍ର ଅଂଶଗୁଡ଼ିକୁ ଖାଦ୍ୟ ଯୋଗାଇବା ପାଇଁ ଅନେକ ରକ୍ତକୋଷ ସଂଯୋଗ ହୋଇଥାଏ । ଏହି ଚମକୋଷଗୁଡ଼ିକ ଉପରକୁ ଉଠିଲେ ନିର୍ଜୀବ ହୋଇଯାଆନ୍ତି ।

ତୁମ ତୈଳଗ୍ରନ୍ଥିରେ ତେଲ ସୃଷ୍ଟି ହୁଏ ଓ ତୁମ ବାଳକୁ ଯୋଗାଏ । ବାଳ ମୂଳରେ ଥିବା ମାଂସପେଶୀରେ ସଙ୍କୁଚନ ଓ ପ୍ରସାରଣ ଦ୍ୱାରା ତେଲ ଉପରକୁ ଯାଏ । ଏହା ଫଳରେ ତୁମ ଚର୍ମ ତେଲିଆ ହୋଇଥାଏ ।

ଚମର ଗହୀର ଅଂଶରେ ବାଳର ମୂଳଗୁଡ଼ିକ ଥାଏ । ଉପରକୁ ଉଠିଥିବା ବାଳ ମରିଗଲେ ଏହି ମୂଳ ପାଖରୁ ପୁଣି ଥରେ ବାଳ କଅଁଳିଥାଏ ।

ଝାଳଗ୍ରନ୍ଥି ତୁମ ଗହୀର ଚମରେ କ୍ଷୁଦ୍ର କ୍ଷୁଦ୍ର ନଳୀ ଆକାରରେ ଥାଏ । ଏହି ନଳୀ ସବୁ ତୁମ ଦେହରୁ ପାଣି ଓ ଲବଣ ବହନ କରି ଝାଳ ସୃଷ୍ଟି କରେ । ଚମ କୋଷର ଛିଦ୍ରଦେଇ ଝାଳ ବାହାରକୁ ଯାଏ ।

**ଚମ ନ ଥିଲେ କ'ଣ ହୁଅନ୍ତା ?**

ତୁମର ଶରୀରର ଅଧିକାଂଶ ଭାଗ ଜଳ, ଏପରିକି ତୁମ ହାଡ଼ରେ ମଧ୍ୟ ଜଳ ଅଛି । ତୁମର ଚମ ନ ଥିଲେ ସୂର୍ଯ୍ୟ ତାପ ଓ ବାୟୁ ତୁମର ଦେହକୁ ଶୁଷ୍କ କାଠି ପରି କରି ଦିଅନ୍ତା ।

ଚମ ଯୋଗୁଁ ବାହାର ପାଣି ଶରୀର ଭିତରକୁ ଯାଇପାରେ ନାହିଁ । ତୁମ ଚମରୁ ବାହାରୁଥିବା ତେଲ, ଚମ ରନ୍ଧ୍ରଗୁଡ଼ିକୁ ବନ୍ଦ କରି ପାଣି ପ୍ରବେଶକୁ ବନ୍ଦକରେ । ବାୟୁମଣ୍ଡଳରେ ଥିବା ମଳି, ଧୂଳି, ଜୀବାଣୁ ଆଦି ତେଲ ଯୋଗୁଁ ଚମ ଉପରେ ଲାଗି ଯାଆନ୍ତି । ତେଣୁ ତୁମକୁ ସାବୁନ୍ ଓ ପାଣି ବ୍ୟବହାର କରି ପ୍ରତିଦିନ ଚମକୁ ସଫା କରିବାକୁ ହୁଏ । ଏହାଦ୍ୱାରା ଭିତରୁ ମଇଳାଯୁକ୍ତ ଝାଳ ମଧ୍ୟ ଶରୀର ବାହାରକୁ ବାହାରିଥାଏ ।

**ଗରମ ହେଲେ ଚମରେ କ'ଣ ହୁଏ ?**

ଯେତେବେଳେ ଗରମ ହୁଏ ସେତେବେଳେ ଝାଳଗ୍ରନ୍ଥିଗୁଡ଼ିକରୁ ଅଧିକ ମାତ୍ରାରେ ଝାଳ, ଚମ ଉପରେ ଥିବା ଛୋଟ ଛୋଟ ଛିଦ୍ରଦ୍ୱାରା ପଦାକୁ ବାହାରେ । ପଦାକୁ ବାହାରିଥିବା ଝାଳ ପବନ ବାଜି ଶୁଖିଯାଏ ଓ ଏହା ଫଳରେ ତୁମ ଚମ ଥଣ୍ଡା ଲାଗେ ।

ତୁମ ଉପର ଚମ ଯେତେବେଳେ ଅଧିକ ମାତ୍ରାରେ ଗରମ ହୋଇ ଯାଏ, (ଚିତ୍ର ନଂ—୪୨) ସେତେବେଳେ ଚମ ତଳେ ଥିବା ରକ୍ତନଳୀଗୁଡ଼ିକରେ ଅଧିକ ମାତ୍ରାରେ ରକ୍ତ ସଞ୍ଚାଳନ ହୁଏ । ତୁମ ରକ୍ତନଳୀଗୁଡ଼ିକ ଚମରୁ ଗରମ ନେଇ ନିଅନ୍ତି । ଏହା ଫଳରେ ତୁମ ଚମ ଥଣ୍ଡା ଲାଗେ ।



ଚିତ୍ର ନଂ-୪୨

ସୂର୍ଯ୍ୟକିରଣ ଧଳା ଚମକୁ କଳା କରିଦିଏ । ସୂର୍ଯ୍ୟଙ୍କର କେତେକ ରଶ୍ମି ତୁମ ଦେହ ପାଇଁ କ୍ଷତିକାରକ । ଏହି କଳା କୋଷ ସୂର୍ଯ୍ୟଙ୍କର ଅନିଷ୍ଟକାରୀ ରଶ୍ମିରୁ ତୁମ ଦେହକୁ ରକ୍ଷା କରେ ।



ଚିତ୍ର ନଂ-୪୩

**ଥଣ୍ଡା ହେଲେ ଚମରେ କ'ଣ ହୁଏ ?**

ଯେତେବେଳେ ଥଣ୍ଡା ହୁଏ ସେତେବେଳେ ବାହାର ବାୟୁ ତୁମ ଦେହରୁ ଉତ୍ତାପ ନେଇଯାଏ । ଏହା ଫଳରେ ତୁମ ରକ୍ତକୋଷ ଥଣ୍ଡା ହୋଇ ସଙ୍କୁଚିତ ହୁଏ ଓ ଶରୀରର ଭିତର ଉତ୍ତାପକୁ ବାହାରକୁ ଯିବାକୁ ଦିଏ ନାହିଁ । ଏହା ଫଳରେ ତୁମେ ମଳିନ ଦେଖାଯାଅ । ତୁମ ବାଳ ପାଖ ମାଂସପେଶୀ ଟାଣ ହୋଇଯାଏ, ଯାହା ଫଳରେ କି ତୁମ ବାଳ ସିଧା ହୋଇ ରହେ । ଏହା ମଧ୍ୟ ଛୋଟ ଓ ମୋଟା ହୋଇଯାଏ, ଯାହା ଫଳରେ କି ତୈଳଗ୍ରନ୍ଥିରୁ ତେଲ ବାହାରକୁ ବାହାରିପାରେ ନାହିଁ । ଏହି କାରଣ ଯୋଗୁଁ ତୁମ ଚମ ଶୁଷ୍କ ଦେଖାଯାଏ ଓ କାତି ପରି ଛାଡ଼େ (ଚିତ୍ର ନଂ–୪୩) ।

# ଶରୀର କିପରି ବାହାର ଜୀବାଣୁ ସହ ଯୁଦ୍ଧ କରେ ?

ତୁମ ଶରୀର ସବୁବେଳେ ବାହାର ଜୀବାଣୁ ଦ୍ୱାରା ଆକ୍ରମିତ ହୁଏ । କିନ୍ତୁ ତୁମ ଶରୀର ଭିତରେ ଥିବା ଅବରୋଧକାରୀ ଶକ୍ତି ସବୁବେଳେ ଏହି ଆକ୍ରମଣର ପ୍ରତିହତ କରିବାକୁ ସଚେତନ ଥାଏ । ତୁମ ଶରୀରକୁ ଗୋଟେ ଦୁର୍ଗ ସହ ତୁଳନା କରାଯାଉ । ତୁମର ଚମଡ଼ା ଦୁର୍ଗର କାନ୍ଥ ସଦୃଶ, ଜୀବାଣୁ କେବେହେଲେ ସୁସ୍ଥ ଚମ ଦେଇ ଭିତରକୁ ପ୍ରବେଶ କରିପାରେ ନାହିଁ । ତୁମ ଚମ କଟିଗଲେ ମଧ୍ୟ ରକ୍ତରେ ଥିବା କୋଷ ସବୁ ସାଙ୍ଗେ ସାଙ୍ଗେ କଟା ଜାଗାକୁ ଠିକ୍ କରିବାରେ ଲାଗିଯାନ୍ତି ଓ ଜୀବାଣୁମାନଙ୍କ ସହ ଯୁଦ୍ଧ କରନ୍ତି ।

ଜୀବାଣୁ ମଧ୍ୟ ତୁମ ପାଟି ଓ ନାକ ବାଟେ ଶରୀର ଭିତରକୁ ପଶି ପାରନ୍ତି, କିନ୍ତୁ ଏ ବାଟେ ମଧ୍ୟ ଜୀବାଣୁ ପ୍ରବେଶ କରିବା କଷ୍ଟସାଧ୍ୟ । ଏହିସବୁ ପ୍ରକାର ଜୀବାଣୁ ବିରୋଧୀ ଶକ୍ତି । ତୁମ ଶରୀର ଦୁର୍ଗ ମଧ୍ୟରେ କିପରି ଅଛନ୍ତି, ଚିତ୍ର ନଂ–୪୪ ରୁ ଜାଣିପାରିବ ।

**ଜୀବାଣୁ କ'ଣ ?**

ଏମାନେ ଖୁବ୍ ଛୋଟ ଛୋଟ ପ୍ରାଣୀ । ଖାଲି ଆଖିରେ ଦେଖା ଯାଆନ୍ତି ନାହିଁ । ସେମାନେ ତୁମ ଶରୀରରେ ପ୍ରବେଶ କଲେ ତୁମକୁ ବେମାର କରି ଦିଅନ୍ତି । ସେମାନେ ବିଷ ସୃଷ୍ଟି କରନ୍ତି ଓ ସୁବିଧା ପାଇଲେ ଶରୀର ମଧ୍ୟରେ ସେମାନଙ୍କର ସଂଖ୍ୟା ବଢ଼ାଇ ଏକ ଶକ୍ତିଶାଳୀ ସେନାବାହିନୀ ଗଠନ କରନ୍ତି ଓ ତୁମ ଶରୀର ମଧ୍ୟରେ ଥିବା ପ୍ରତିରୋଧ ସେନାମାନଙ୍କ ସହ ଲଢ଼ି ସେମାନଙ୍କୁ ପ୍ରଥମେ ଅକାମି କରନ୍ତି ବା ନଷ୍ଟ କରି ଦିଅନ୍ତି । ତା'ପରେ ତୁମ ଶରୀର ମଧ୍ୟରେ ରୋଗ ବୃଦ୍ଧି କରି ଶେଷରେ ତୁମକୁ ମାରିବାକୁ ଚେଷ୍ଟା କରନ୍ତି । ସେମାନଙ୍କୁ ତୁମେ ଡାକ୍ତର ଡାକି ଉପଯୁକ୍ତ ଚିକିତ୍ସା ଦ୍ୱାରା ନ ମାରିଲେ ନିଜେ ମୃତ୍ୟୁ ମୁଖରେ ପଡ଼ିବ ।

ଏ ଜୀବାଣୁଗୁଡ଼ିକ ଉଷୁମ, ମଇଳା ଓ ଅନ୍ଧାର ଜାଗାକୁ ଭଲ ପାଆନ୍ତି । ସୂର୍ଯ୍ୟ ରଶ୍ମି ଓ ମୁକ୍ତ ବାୟୁ ଏହି ଜୀବାଣୁଗୁଡ଼ିକୁ ମାରି ଦିଅନ୍ତି, ସାବୁନ୍‌ଯୁକ୍ତ ପାଣି ମଧ୍ୟ ଏମାନଙ୍କୁ ମାରିଦିଏ ।

ଉପଯୁକ୍ତ ପୁଷ୍ଟିକର ଖାଦ୍ୟ ଖାଇଲେ ତୁମ ଶରୀରରେ ଏହି ସବୁ ଜୀବାଣୁ ମାରିବା ପାଇଁ ପ୍ରତିରୋଧ ଶକ୍ତି ବଢ଼େ ।

କେତେକ ଜୀବାଣୁ ମଧ୍ୟରେ ଗୁପ୍ତ ଅସ୍ତ୍ର ଥାଏ ଯାହାକି ତୁମ ଶରୀର ଭିତରେ ଥିବା ଶକ୍ତି ଜାଣିପାରନ୍ତି ନାହିଁ ବା ସେପରି ଅସ୍ତ୍ର ସହ ଯୁଦ୍ଧ କରିବାକୁ ଜାଣନ୍ତି ନାହିଁ । ସେଥିପାଇଁ ଡାକ୍ତର ଇଞ୍ଜେକ୍ସନ୍ ଦ୍ୱାରା ତୁମ ଶରୀର ଭିତରକୁ ସେହି ପ୍ରକାରର ନିର୍ବଳୁଆ ବାହ୍ୟ ପଦାର୍ଥ (ଆଣ୍ଟିଜେନ) ଭର୍ତ୍ତି କରିଦିଅନ୍ତି । ତୁମର ରକ୍ତକୋଷ ଏହି ନୂଆ ଅସ୍ତ୍ରକୁ କିପରି ପ୍ରତିହତ କରିବାକୁ ହେବ, ଏହି ନିର୍ବଳୁଆ ଜୀବାଣୁଙ୍କଠାରୁ ଜାଣି ପ୍ରସ୍ତୁତ ହୁଅନ୍ତି ଓ ଯଦି କେବେ ସେ ପ୍ରକାର ସବଳୁଆ ଜୀବାଣୁ ପଶନ୍ତି ତେବେ




ଚିତ୍ର ନଂ-୪୪

ତାଙ୍କୁ ମାରିବାରେ କ୍ଷମ ହୁଅନ୍ତି, ଏଥିପାଇଁ ଡାକ୍ତର ତୁମକୁ ବିଭିନ୍ନ ରୋଗର ପ୍ରତିଷେଧକ ଟିକା ବା ଇଞ୍ଜେକ୍ସନ୍ ଦିଅନ୍ତି ।

ତୁମର କୌଣସି ଅଂଶ କଟିଗଲେ ତୁମର ରକ୍ତ ସାଙ୍ଗେ ସାଙ୍ଗେ ଶୁଖିଯାଇ ତା'ଉପରେ ଏକ ବକଳା ବାନ୍ଧିଦିଏ, ଏହି ବକଳା ବାହାର ଜୀବାଣୁ ନ ପଶିବା ପାଇଁ ତୁମ କ୍ଷତ ସ୍ଥାନରେ ପ୍ରତିବନ୍ଧକ ସୃଷ୍ଟି କରନ୍ତି ।

୧) ତୁମ ନାକରେ ରୁମ ଓ ଅଠାଳିଆ ପଦାର୍ଥ ଥିବାରୁ ଏଠାରେ ଜୀବାଣୁ ବନ୍ଦୀ ହୋଇ ରହି ଯାଆନ୍ତି ।

୨) ତୁମ ପାଟି ଦେଇ ଖୁବ୍ ସହଜରେ ଜୀବାଣୁ ପେଟ ଭିତରକୁ ଯାଇପାରନ୍ତି । ତେଣୁ ହାଇ ମାରିଲା ବେଳେ ପାଟିରେ ହାତ ଦେଇ ହାଇ ମାରିବ । ଖାଦ୍ୟ ଜିନିଷ ସବୁ ଖାଇଲା ବେଳେ ସାବଧାନ ହେବ ।

୩) ଛେପ ସହିତ ମିଶି ଜୀବାଣୁ ତୁମ ପାକସ୍ଥଳୀକୁ ପ୍ରବେଶ କରନ୍ତି । ପାକସ୍ଥଳୀରେ ଥିବା ବିଭିନ୍ନ ରସ ଅଧିକାଂଶ ଜୀବାଣୁଙ୍କୁ ମାରିଦିଏ ।

୪) ଆଖି ଲୁହ ମଧ୍ୟ ଜୀବାଣୁ ମାରିଦିଏ ଓ ଆଖିକୁ ସଫା ରଖେ ।

୫) କାନ ଗାତ ଦେଇ ଜୀବାଣୁ ଯିବାକୁ ଚେଷ୍ଟା କରେ, କିନ୍ତୁ ଯାଇପାରେ ନାହିଁ । କାରଣ ଭିତରେ ରୁମ ଓ ମହମ ଭଳି ରସ ଜୀବାଣୁଗୁଡ଼ିକୁ ଅଟକାଇ ରଖେ ।

୬) ଝାଳ ବାହାରୁଥିବା ଛୋଟ ଛୋଟ ରନ୍ଧ୍ର ଦେଇ ଜୀବାଣୁ ଯିବାକୁ ଚେଷ୍ଟା କରେ । ବିଶୁଦ୍ଧ ଝାଳ ଜୀବାଣୁଗୁଡ଼ିକୁ ମାରିଦିଏ । କିନ୍ତୁ ଝାଳ ଶୁଖିଗଲେ ମଇଳା ଲାଗି ରହିଯାଏ । ତେଣୁ ଝାଳକୁ ପୋଛିଦେବା ଉଚିତ ।

୭) ତୁମର ରକ୍ତରେ ଥିବା ଶ୍ୱେତ ରକ୍ତକୋଷ ଜୀବାଣୁ ବିରୋଧରେ ଯୁଦ୍ଧ କରି ତାକୁ ପ୍ରତିହତ କରନ୍ତି ।

୮) କଟା ଜାଗାରେ ଚମ ତଳକୁ ଥିବା ତଳି ଚମରୁ କୋଷ ସବୁ ଆସି କ୍ଷତ ଜାଗାକୁ ଶୀଘ୍ର ଶୁଖାଇ ଠିକ୍ କରିବାକୁ ଚେଷ୍ଟା କରନ୍ତି । ଏହି ପ୍ରକ୍ରିୟା ଫଳରେ ରକ୍ତ ବାହାରକୁ ଯାଏ ନାହିଁ । ବରଂ ଏକ ଶକ୍ତ ବକଳ ବାନ୍ଧି ବାହାର ଜୀବାଣୁମାନଙ୍କୁ ପ୍ରତିରୋଧ କରନ୍ତି । ଏଠାକୁ ମଧ୍ୟ ଶ୍ୱେତରକ୍ତକଣିକା ଯାଇ ଜୀବାଣୁ ପ୍ରତିହତ କରେ ବା କରିବା ପାଇଁ ଜାଗି ରହେ ।

# ଶରୀର ଅଙ୍ଗସଜା

ତୁମେମାନେ ବୋଧହୁଏ ଭାବୁଥିବ, ଶରୀରର ଏତେଗୁଡ଼ିଏ ଯନ୍ତ୍ର ବା ଅଙ୍ଗ କିପରି ଭାବରେ ଓ କେଉଁଠାରେ ଖଞ୍ଜା ହୋଇଥାଏ । ପର ଲେଖାରେ ତୁମ ଅଙ୍ଗଗୁଡ଼ିକ ଶରୀର ଭିତରେ କିପରି ସଜା ହୋଇଛି ବୁଝାଇ ଦିଆ ଯାଇଛି ।

## ୧) କଙ୍କାଳ

କଙ୍କାଳ ତୁମ ଶରୀରକୁ ଏକ ନିର୍ଦ୍ଦିଷ୍ଟ ଆକାର ଦେଇଥାଏ । ତୁମ କଙ୍କାଳରେ ୨୦୬ଟି ହାଡ଼ ଥାଏ । ଏହି ହାଡ଼ଗୁଡ଼ିକ କିପରି ଖଞ୍ଜା ହୋଇଥାଏ, ଚିତ୍ର ନଂ–୪୫ରୁ ଜାଣିପାରିବ ।




ଚିତ୍ର ନଂ-୪୫

## ୨) ଶ୍ୱାସଯନ୍ତ୍ର ବା ଫୁସ୍‌ଫୁସ୍

ଫୁସ୍‌ଫୁସ୍ ସାହାଯ୍ୟରେ ତୁମେ ନିଶ୍ୱାସ ପ୍ରଶ୍ୱାସ ପ୍ରକ୍ରିୟା ସମ୍ପାଦନ କରିପାର । ଏହା ତୁମ ପଞ୍ଜରା ଭିତରେ ଥିବା ଖାଲି ସ୍ଥାନରେ ଝୁଲିକରି ଥାଏ । ଫୁସ୍‌ଫୁସ୍ ତଳେ ଏକ ପରଦା ଆକାରର ମାଂସପେଶୀ ଥାଏ ଯାହାକି ଫୁସ୍‌ଫୁସ୍‌କୁ କାମ କରିବାରେ ସାହାଯ୍ୟ କରେ (ଚିତ୍ର ନଂ–୪୬) ।




ଚିତ୍ର ନ -୪୬

## ୩) ଖାଦ୍ୟଯନ୍ତ୍ର

ତୁମର ଖାଦ୍ୟଯନ୍ତ୍ର ଖୁବ୍ ସରୁ ସରୁ ସୂତା ଭଳି ପଦାର୍ଥ ଦ୍ୱାରା ପଛ ହାଡ଼ ସହ ଯୋଗ ହୋଇଥାଏ । ତୁମ ପାକସ୍ଥଳୀ ଓ ପଛ ମାଂସପେଶୀ ଏହାକୁ ଠିକ୍ ଜାଗାରେ ସୁରକ୍ଷିତ ଅବସ୍ଥାରେ ରଖେ (ଚିତ୍ର ନଂ–୪୭) ।




ଚିତ୍ର ନଂ-୪୭ ଖାଦ୍ୟ ଯନ୍ତ୍ର

## ୪) ମୂତ୍ରଯନ୍ତ୍ର ଓ ମୂତ୍ରାଶୟ

ମୂତ୍ରଯନ୍ତ୍ରରେ ରକ୍ତ ପରିଷ୍କାର ହୁଏ । ରକ୍ତରେ ଥିବା ଅନାବଶ୍ୟକ ଜଳୀୟପଦାର୍ଥକୁ ମୂତ୍ରଯନ୍ତ୍ର କାଢ଼ି ନିଏ ଓ କ୍ଷୁଦ୍ର ନଳୀ ଦ୍ୱାରା ମୂତ୍ରାଶୟକୁ ପଠାଏ । ଏଠାରୁ ଆଉ ଏକ ନଳୀ ସାହାଯ୍ୟରେ ଏହି ଅନାବଶ୍ୟକ ଜଳୀୟପଦାର୍ଥ ମୂତ୍ର ଆକାରରେ ପଦାକୁ ବାହାରି ଆସେ । ପୁଅ ପିଲାଙ୍କ ନଳୀ ଝିଅ ପିଲାଙ୍କ ନଳୀ ଅପେକ୍ଷା ଲମ୍ବା (ଚିତ୍ର ନଂ—୪୮) ।




ଚିତ୍ର ନଂ–୪୮ ମୂତ୍ରଯନ୍ତ୍ର ଓ ମୂତ୍ରାଶୟ

## ୫) ମାଂସପେଶୀ

ତୁମ ଶରୀର ଭିତରେ ରହିଛି ପ୍ରାୟ ୪୦୦ଟି ମାଂସପେଶୀ । ଏହାର ଓଜନ ତୁମ ଶରୀର ଓଜନର ପ୍ରାୟ ଅଧା । ମାଂସପେଶୀଗୁଡ଼ିକ ଯୋଗ ହୋଇ ତୁମ ସୁଗଠିତ ଶରୀରର ଶୋଭା ବୃଦ୍ଧି କରେ ଓ ଶରୀର ଉପରେ ଏକ ଘୋଡ଼ଣୀ ଭଳି କାର୍ଯ୍ୟ କରେ ।

ମାଂସପେଶୀ ଦୁଇ ପ୍ରକାରର । କେତେଗୁଡ଼ିଏ ତୁମ ଇଚ୍ଛା ଅନୁଯାୟୀ କାମ କରେ ଓ ଆଉ କେତେଗୁଡ଼ିଏ ଇଚ୍ଛା ଅନୁଯାୟୀ କାମ କରେ ନାହିଁ । ଯଥା ଆଖିପତାର ମାଂସପେଶୀକୁ ତୁମେ ଇଚ୍ଛା ଅନୁଯାୟୀ କାର୍ଯ୍ୟରେ ଲଗାଇ ପାର ନାହିଁ । ତୁମେ ଯେତେ ଚେଷ୍ଟା କଲେ ମଧ୍ୟ ଆଖିପତାକୁ ଅନିର୍ଦ୍ଦିଷ୍ଟ କାଳ ପାଇଁ ଖୋଲା ରଖିପାରିବ ନାହିଁ (ଚିତ୍ର ନଂ–୪୯) ।



ଚିତ୍ର ନଂ–୪୯ ଶରୀରର ମାଂସପେଶୀ ସମୂହ

## ୬) ରକ୍ତନଳୀ ଓ ହୃଦ୍‌ପିଣ୍ଡ

ଚିତ୍ର ନଂ–୫୦ ରେ ତୁମ ପ୍ରଧାନ ପ୍ରଧାନ ରକ୍ତନଳୀ କିପରି ଖଞ୍ଜା ଯାଇଛି ଜାଣିପାରିବ । ଯେଉଁ ପ୍ରଧାନ ନଳୀ ଦେଇ ରକ୍ତ ହୃତ୍‌ପିଣ୍ଡରୁ ବିଭିନ୍ନ ଅଙ୍ଗକୁ ଯାଏ, ତାହାକୁ ଧମନୀ କହନ୍ତି ଓ ଯେଉଁ ନଳୀ ଦେଇ ରକ୍ତ ଶରୀରର ବିଭିନ୍ନ ଅଙ୍ଗରୁ ବାହାରି ହୃଦ୍‌ଯନ୍ତ୍ରକୁ ପ୍ରବେଶ କରେ

ତାହାକୁ ଶିରା କହନ୍ତି । ବଡ଼ ରକ୍ତନଳୀରୁ ଶାଖା ଓ ପ୍ରଶାଖାନଳୀ ବାହାରିଥାଏ ଏବଂ ଅତି ସରୁନଳୀ ମଧ୍ୟ ଅନେକ ଥାଏ ।




ଚିତ୍ର ନଂ–୫୦ ରକ୍ତନଳୀ ଓ ହୃଦ୍‌ପିଣ୍ଡ

## ୭) ସ୍ନାୟୁ

ପ୍ରଧାନ ସ୍ନାୟୁ ମେରୁଦଣ୍ଡ ହାଡ଼ ମଝିରେ ମସ୍ତିଷ୍କକୁ ଯାଇଅଛି । ଅନ୍ୟ ସ୍ନାୟୁ ସବୁ ଏହା ସହିତ ସଂଯୋଗ ହୋଇଅଛି । ଶରୀର ଭିତର ଓ




ଚିତ୍ର ନଂ—୫୧ ସ୍ନାୟୁମଣ୍ଡଳ

ବାହାରର ସମସ୍ତ ଖବର ଏହି ସ୍ନାୟୁଗୁଡ଼ିକ ଦ୍ୱାରା ମସ୍ତିଷ୍କକୁ ପଠାଯାଏ (ଚିତ୍ର ନଂ—୫୧) ।

# ଶରୀର କିପରି ତିଆରି ହୋଇଥାଏ ?

ତୁମ ଶରୀର ଓ ଅନ୍ୟ ସମସ୍ତ ଜୀବନ୍ତ ପଦାର୍ଥ ଛୋଟ ଛୋଟ କୋଷରେ ତିଆରି ହୋଇଅଛି । କୋଷଗୁଡ଼ିକ ଏତେ ଛୋଟ ଯେ ତୁମେ ତାହା ଖାଲି ଆଖିରେ ଦେଖିପାରିବ ନାହିଁ । କିନ୍ତୁ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ କୋଷଗୁଡ଼ିକ ଦେଖାଯାଆନ୍ତି ।

ତୁମ ଦେହରେ ବିଭିନ୍ନ ପ୍ରକାରର କୋଷ ଅଛନ୍ତି; ଯାହାକି ଭିନ୍ନ ଭିନ୍ନ ପ୍ରକାର କାର୍ଯ୍ୟ କରନ୍ତି । ଏକ ପ୍ରକାର କୋଷର ସମଷ୍ଟିକୁ ତନ୍ତୁ ବା ଟିସୁ କୁହାଯାଏ । ତୁମ ଶରୀରର ବିଭିନ୍ନ ଅଂଶରେ ଭିନ୍ନ ଭିନ୍ନ ପ୍ରକାରର ତନ୍ତୁ ଅଛି ।

ଏହା ଏକ ମାଂସପେଶୀର କୋଷ । ଏହା କେବଳ ଚିପି ହୋଇ ପାରେ ଓ ଖୋଲି ହୋଇପାରେ, କିନ୍ତୁ ଲମ୍ବା ହୋଇପାରେ ନାହିଁ (ଚିତ୍ର ନଂ-୫୨) ।

କେତେକ ମାଂସପେଶୀ କୋଷ ଯୋଗ ହୋଇ ଏକ ସୂତା ଭଳି ଦେଖାଯାଏ, ଯାହାକୁକି ତନ୍ତୁ କୁହାଯାଏ । ମାଂସ ଖାଇଲା ବେଳେ ପରୀକ୍ଷା କରି ଦେଖ (ଚିତ୍ର ନଂ-୫୩) ।




ଚିତ୍ର ନଂ-୫୨




ଚିତ୍ର ନଂ-୫୩

ମାଂସପେଶୀ ଚିପି ହୋଇଗଲେ ଏହାର ସମସ୍ତ କୋଷ ମଧ୍ୟ ଚିପି ହୋଇଯାଏ (ଚିତ୍ର ନଂ-୫୪) ।

ଏହା ଏକ ସ୍ନାୟୁକୋଷ । ଏଥିରେ ଥିବା ଲମ୍ବା ଅଂଶ ଖବର ସଂଗ୍ରହ ଓ ପ୍ରେରଣ କରେ (ଚିତ୍ର ନଂ-୫୫) ।







ଚିତ୍ର ନଂ-୫୪

ଚିତ୍ର ନଂ-୫୫

ଏହା ଏକ ସ୍ନାୟୁ କୋଷର ସମଷ୍ଟି ବା ବିଡ଼ା । ସ୍ନାୟୁ କୋଷ ଯୋଗ ହୋଇ ଏକ ବିଡ଼ା ପରି ଦେଖାଯାଏ । (ଟେଲିଫୋନ୍ ତାର ପରି) ଏହି ସ୍ନାୟୁ ବିଡ଼ା, ତୁମର ପ୍ରଧାନ ସ୍ନାୟୁ ଯାହାକି ତୁମ ମେରୁଦଣ୍ଡ ଭିତରେ ମସ୍ତିଷ୍କକୁ ଯାଇ, ତା'ସହିତ ଯୋଗ ହୋଇଥାଏ (ଚିତ୍ର ନଂ-୫୬) ।

ଏହିଗୁଡ଼ିକ ଲାଲ ରକ୍ତ କୋଷ ଅଣୁବୀକ୍ଷଣ ଯନ୍ତ୍ରରେ ଦେଖିଲେ ଜାଣିପାରିବ ଯେ ଏହି ଲାଲ ରକ୍ତକୋଷଗୁଡ଼ିକ ଏକ ରଙ୍ଗହୀନ ଜଳୀୟ ପଦାର୍ଥରେ ଭାସୁଥାଏ (ଚିତ୍ର ନଂ-୫୭) ।







ଚିତ୍ର ନଂ-୫୬

ଚିତ୍ର ନଂ-୫୭

ଲାଲ ରକ୍ତକୋଷ ଅମ୍ଳଜାନ ବାଷ୍ପ ବହନ କରେ । ଏଥିରୁ ଶରୀରର ଅନ୍ୟ କୋଷ ସବୁ ଅମ୍ଳଜାନ ପାଏ । ତୁମ ରକ୍ତରେ ଥିବା ରଙ୍ଗହୀନ ଜଳୀୟପଦାର୍ଥ କ୍ଷୁଦ୍ର କ୍ଷୁଦ୍ର ଖାଦ୍ୟ ଅଣୁମାନ ବହନ କରି ତୁମ ଶରୀରର ଅନ୍ୟ କୋଷକୁ ଖାଦ୍ୟ ଯୋଗାଏ (ଚିତ୍ର ନଂ-୫୮) ।

ଏହି ଛବିରେ ତୁମ ଶରୀରର ଚମକୋଷ ଦେଖାଯାଉଛି । ଏହାର ଉପରସ୍ତର କୋଷଗୁଡ଼ିକରେ ଜୀବନ ନ ଥାଏ । କିନ୍ତୁ ନିମ୍ନସ୍ତରଗୁଡ଼ିକରେ







ଚିତ୍ର ନଂ-୫୮

ଚିତ୍ର ନଂ-୫୯

ଜୀବନ ଥାଏ । ଏହିଠାରେ ନୂଆ କୋଷ ସୃଷ୍ଟି ହୋଇ ଉପରକୁ ଉଠେ (ଚିତ୍ର ନଂ-୫୯) ।

**କୋଷ କିପରି ଭାବେ ବୃଦ୍ଧି ହୁଏ ?**

ନୂଆ କୋଷ କିପରି ତିଆରି ହୁଏ ତାହା ଉକ୍ତ ଚିତ୍ରରୁ ଜାଣିପାରିବ । ବୃଦ୍ଧି ପାଉଥିବା କୋଷଟି ଚିତ୍ରରେ କଳା କରି ଦିଆଯାଇଛି । ଗୋଟିଏରୁ ଦୁଇଟି, ଦୁଇଟିରୁ ଚାରୋଟି– ଏହି କ୍ରମରେ କୋଷମାନଙ୍କର ସଂଖ୍ୟାବୃଦ୍ଧି ଘଟେ । କୋଷର ମଧ୍ୟ ଜୀବନ ଅଛି । କୋଷ ବୁଢ଼ାହୋଇଗଲେ ମରିଯାଏ ଓ ନୂଆ କୋଷ ତିଆରିହୋଇ ତା'ର ସ୍ଥାନ ପୂରଣ କରେ ।



ଚିତ୍ର ନ. ୬୦

# ମଣିଷ ଶରୀର କି ପ୍ରକାର ଖାଦ୍ୟ ଦରକାର କରେ ?

ମଣିଷ ଶରୀର ସାତ ପ୍ରକାର ଖାଦ୍ୟ ପଦାର୍ଥ ଦରକାର କରେ । ଏଥିରୁ କିଛି କିଛି ଖାଦ୍ୟ ତୁମେ ପ୍ରତିଦିନ ଖାଇବା ଦରକାର ହୁଏ ।

୧) ଦୁଧ ଓ ଛେନା—ଟାଣୁଆ ହାଡ଼ ସୁସ୍ଥସବଳ ଦାନ୍ତ ପାଇଁ ଦରକାର (ଚିତ୍ର ନଂ-୬୧) ।

୨) କଞ୍ଚା କଦଳୀ, ଶାଗ, ଗାଜର ଓ ସମସ୍ତ ସବୁଜ ଓ ହଳଦିଆ ପତ୍ରଯୁକ୍ତ ପରିବା ତୁମ ଚମକୁ ସବଳ ଓ ବାଳକୁ ଚିକ୍କଣ ରଖେ (ଚିତ୍ର ନଂ-୬୨) ।

(୧)



ଚିତ୍ର ନଂ-୬୧

(୨)



ଚିତ୍ର ନଂ-୬୨

୩) ଲେମ୍ବୁ, ବିଲାତିବାଇଗଣ ଇତ୍ୟାଦି ତୁମ ଶରୀର ଭିତରେ ଥିବା ଜୀବାଣୁ, ବିଶେଷତଃ ସର୍ଦ୍ଦି କରୁଥିବା ଜୀବାଣୁକୁ ନଷ୍ଟ କରନ୍ତି (ଚିତ୍ର ନଂ-୬୩) ।

୪) ମାଛ, ମାଂସ, ଅଣ୍ଡା ଇତ୍ୟାଦି ଶରୀରକୁ ଶକ୍ତ ଓ ସବଳ ରଖନ୍ତି । (ଚିତ୍ର ନଂ-୬୪)

(୩)



ଚିତ୍ର ନଂ-୬୩

(୪)



ଚିତ୍ର ନଂ-୬୪

୫) ଚାଉଳ, ଗହମ, ଡାଲି ଇତ୍ୟାଦି ଖାଦ୍ୟ ତୁମ ଶରୀରକୁ ଶକ୍ତି ଯୋଗାଏ (ଚିତ୍ର ନଂ-୬୫) ।

୬) କଦଳୀ, ଆମ୍ବ ପ୍ରଭୃତି ସମସ୍ତ ଫଳ ଶରୀରର ସର୍ବବିଧ ଉପକାରରେ ଲାଗନ୍ତି (ଚିତ୍ର ନଂ-୬୬) ।

୭) ଲହୁଣି, ଘିଅ, ତେଲ ଇତ୍ୟାଦି ଚମ ଓ କେଶ ପାଇଁ ନିତାନ୍ତ ଦରକାର ।(ଚିତ୍ର ନଂ-୬୭)



ଚିତ୍ର ନଂ-୬୫


ଚିତ୍ର ନଂ-୬୬



ଚିତ୍ର ନଂ-୬୭